ସାକ୍ଷର ଭାରତ
SAKSHAR BHARAT

# ଭୂମିପୁତ୍ର
# ମହମ୍ମଦ ବାଙ୍କୀ



ଡ. ବାସନ୍ତୀ ମହାନ୍ତି

# ଭୂମିପୁତ୍ର ମହମ୍ମଦ ବାଜୀ

ଲେଖିକା :
ଡ. ବାସନ୍ତୀ ମହାନ୍ତି
ସମୀକ୍ଷା :
ଶ୍ରୀ ସୁବାସ ଚନ୍ଦ୍ର ମିଶ୍ର
ପ୍ରକାଶକ :
ନିର୍ଦ୍ଦେଶକ, ରାଜ୍ୟ ଜନଶିକ୍ଷା ଓ ନିରନ୍ତର ଶିକ୍ଷା ସାଧନ କେନ୍ଦ୍ର
(ଅଗ୍ରଗାମୀ), ରାୟଗଡ଼, ଓଡ଼ିଶା
ପ୍ରଚ୍ଛଦ : ଭକ୍ତହରି ଦାଶ
ଅଳଙ୍କରଣ : ଅକ୍ଷୟ କୁମାର ଦାସ
ପ୍ରକାଶନ କାଳ : ୨୦୧୭
ମୁଦ୍ରଣ : ବିଶ୍ୱରୂପା, ଭୁବନେଶ୍ୱର
ମୂଲ୍ୟ : ଟ. ୪୦/-

**BHUMIPUTRA MAHAMMAD BAJI**

Writer :
**Dr. Basanti Mohanty**
Review :
**Sri Subash Chandra Mishra**
Publisher :
**Director, State Resource Centre for Adult & Continuing Education (Agragamee), Rayagada, Odisha**
Cover : **Bhaktahari Dash**
Art : **Akshya Kumar Das**
Year of Publication : **2017**
Printed at : **Biswarupa, Bhubaneswar**
Price : Rs. 40/-

# ମୁଖବନ୍ଧ

ଆମ ଦେଶର ସ୍ୱାଧୀନତା ସଂଗ୍ରାମକୁ ଯେଉଁମାନେ ବ୍ରତଭାବେ ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରୁ ନବରଙ୍ଗପୁର ଜିଲ୍ଲାର ମହମ୍ମଦ ବାଜୀ ଅନ୍ୟତମ । ଶ୍ରୀଯୁକ୍ତ ବାଜୀ ସ୍ୱାଧୀନତା ସଂଗ୍ରାମରେ ନିଜର ସକ୍ରିୟ ଭୂମିକା ତୁଲାଇବା ସହ ପରବର୍ତ୍ତୀ କାଳରେ 'ଭୂଦାନ' ଆନ୍ଦୋଳନରେ ମଧ୍ୟ ଅଂଶଗ୍ରହଣ କରିଥିଲେ । ତତ୍କାଳୀନ ସମୟରେ 'ଭୂଦାନ' ଏକ ଜନଆନ୍ଦୋଳନ ଥିଲା ଉଭୟ ଜୀବନ ଓ ଜୀବିକାର । ଏହିକ୍ରମରେ ମହମ୍ମଦ ବାଜୀ ହେଉଛନ୍ତି ଜଣେ ନମନୀୟ ମଣିଷ ଓ ଆମ ସମସ୍ତଙ୍କ ପାଇଁ ଅନିର୍ବାଣ ଦୀପଶିଖା । ଡ. ବାସନ୍ତୀ ମହାନ୍ତି ଶ୍ରୀଯୁକ୍ତ ବାଜୀଙ୍କ ସଂପର୍କରେ ଏହି ପୁସ୍ତକଟି ରଚନା କରିଥିବାରୁ ସାଧନ କେନ୍ଦ୍ର ତରଫରୁ ମୁଁ ତାଙ୍କୁ ସାଧୁବାଦ ଜଣାଉଛି ଏବଂ ସମୀକ୍ଷକ ଭାବେ ଶ୍ରୀଯୁକ୍ତ ସୁବାସ ଚନ୍ଦ୍ର ମିଶ୍ରଙ୍କୁ ମଧ୍ୟ ମୋ'ର କୃତଜ୍ଞତା ଜଣାଉଅଛି । ଶ୍ରୀଯୁକ୍ତ ମିଶ୍ର ଏହି ପୁସ୍ତକଟିର ଯଥାର୍ଥ ସମୀକ୍ଷା କରି ଏହାକୁ ପ୍ରକାଶନ ଯୋଗ୍ୟ କରିଅଛନ୍ତି । 'ଭୂମିପୁତ୍ର ମହମ୍ମଦ ବାଜୀ' ପୁସ୍ତକର ପ୍ରକାଶନ ଅବସରରେ ଏହି କାର୍ଯ୍ୟ ସହ ସଂପୃକ୍ତ ସମସ୍ତଙ୍କୁ ମୋ'ର ଅନେକ ସାଧୁବାଦ ଜଣାଉଅଛି ।

ଶ୍ରୀଯୁକ୍ତ ମହମ୍ମଦ ବାଜୀଙ୍କୁ ଆମ ସମସ୍ତଙ୍କର ଶତଶତ ନମସ୍କାର ।

**ଅଚ୍ୟୁତ ଦାସ**

ଅଧ୍ୟକ୍ଷ, ରାଜ୍ୟ ଜନଶିକ୍ଷା ଓ ନିରନ୍ତର ଶିକ୍ଷା ସାଧନ କେନ୍ଦ୍ର (ଅଗ୍ରଗାମୀ), ରାୟଗଡ଼

ନବରଙ୍ଗପୁର ସ୍ୱତନ୍ତ୍ର ଜିଲ୍ଲା ଘୋଷଣା ହେବା ପୂର୍ବରୁ ଏ ଅଞ୍ଚଳ ଅବିଭକ୍ତ କୋରାପୁଟ ଜିଲ୍ଲା ସହ ମିଶି ରହିଥିଲା ଏବେ ଏହା ଏକ ସ୍ୱୟଂ ସଂପୂର୍ଣ୍ଣ ଜିଲ୍ଲା । ଏ ଜିଲ୍ଲାର ୬୨ ପ୍ରତିଶତ ଲୋକ ଅନୁସୂଚିତ ଜନଜାତିର । ଏମାନେ ହେଲେ କନ୍ଧ, ଭତରା, ଗଣ୍ଡ, ବନଜାରା, ହାଲବା ଇତ୍ୟାଦି । ଏମାନେ ୧୯୪୦ ମସିହାରୁ ୧୯୪୩ ମସିହା ଭିତରେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ ।

ସେତେବେଳେ ଦେଶରେ ଇଂରେଜ ଶାସନ । ଆମ ଦେଶୀୟ ରାଜାମାନେ ସେମାନଙ୍କ ଅଧୀନରେ ଥାଆନ୍ତି । ଲୋକମାନଙ୍କ ଠାରୁ କର ଆଦାୟ କରି ଇଂରେଜମାନଙ୍କୁ ଦେବା ଓ ସେମାନଙ୍କୁ ଖୁସି କରିବାପାଇଁ, ପ୍ରଜାମାନଙ୍କଠାରୁ ଜୋର ଜୁଲମ୍‌କରି ପଇସା, ଧାନ, ବିରି, ମୁଗ, ମାଣ୍ଡିଆ, କାନ୍ଦୁଲ ଆଦି ଫସଲ ଛଡ଼େଇ ନେଉଥିଲେ । ମୁଣ୍ଡ ଝାଳ ତୁଣ୍ଡରେ ମାରି ଖଟୁଥିବା ଚାଷୀମାନେ ନିଜର ଅମଳକୁ ସରକାରକୁ ଦେଇ ଭୋକ ଉପାସରେ ଦିନ କାଟୁଥିଲେ । ଏଥିପାଇଁ ଏ ମଣିଷ ମାନଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି ହୋଇଥିଲା । କିନ୍ତୁ କେମିତି କି ଉପାୟରେ ସରକାର ବିରୁଦ୍ଧରେ ଲଢ଼ିବେ ତାହା ଜାଣିପାରୁନଥିଲେ । ଏମାନଙ୍କ ଦୁଃଖରେ ଦୁଃଖୀ ହୋଇ ପଡ଼ିଥିଲେ ଏ ଅଞ୍ଚଳର ରାଧା କୃଷ୍ଣ ବିଶ୍ୱାସ ରାୟ, ଲକ୍ଷ୍ମୀଚନ୍ଦ୍ର ତ୍ରିପାଠୀ, ସଦାଶିବ ତ୍ରିପାଠୀ, ସଦାନନ୍ଦ ମହାନ୍ତି, ଜଗନ୍ନାଥ ତ୍ରିପାଠୀ, ମହମ୍ମଦ ବାଜୀ ଆଦି ସ୍ୱାଧୀନତା ସଂଗ୍ରାମୀମାନେ । ଏହି ସଂଗ୍ରାମୀମାନେ ଜନସାଧାରଣଙ୍କୁ କେମିତି ଅହିଂସାରେ ଲଢ଼ିବାକୁ ହୁଏ ଶିଖାଇଥିଲେ । ନିଜ ଅଧିକାର, ଦାବି କେମିତି ସାବ୍ୟସ୍ତ କରିବାକୁ ହୁଏ ତାହା ବତେଇଥିଲେ । ତାଲିମ୍ କେନ୍ଦ୍ରମାନ ଖୋଲି ଆଦିବାସୀମାନଙ୍କୁ ଏକାଠି କରି ଗାନ୍ଧି ମହାତ୍ମାଙ୍କ କଥା ଶୁଣାଇଥିଲେ । ଗାଁ ଗାଁରେ, ହାଟକୁ ହାଟ ସଭା ସମିତି କରି ସମସ୍ତଙ୍କୁ ଏକଜୁଟ କରିଥିଲେ । ଏମାନଙ୍କ ଚେଷ୍ଟା ଫଳରେ ସୋନୁମାଝୀ, ବଗା ପୂଜାରୀ, ରବିସିଂ ମାଝୀ, ମାଧବ ପ୍ରଧାନୀ, ଭଦ୍ରର ଜାନୀ, ରାଇଧର ଜାନୀ ଇତ୍ୟାଦି



ଆଦିବାସୀ ନେତା ସୃଷ୍ଟି ହୋଇଥିଲେ । ଏମାନଙ୍କୁ କୁହାଯାଉଥିଲା ଗାନ୍ଧି ଗୁମାସ୍ତା । ପ୍ରତି ଗାଁରେ ଗାନ୍ଧି ଗୁମାସ୍ତା ସୃଷ୍ଟି ହେଲେ । ସେମାନେ ସ୍ୱାଧୀନତା ଆନ୍ଦୋଳନ ଚଲେଇଲେ । ପୁଲିସ୍‌କୁ ଦେଖି ପ୍ରାଣଭୟରେ ବଣ ଜଙ୍ଗଲରେ ଲୁଚୁଥିବା ମଣିଷମାନେ ନିର୍ଭୀକ ହୋଇଗଲେ । ସେମାନଙ୍କ ଡର ଛାଡ଼ିଲା, ପୁଲିସ୍‌ର ଗୁଳିଗୁଳା ଆଗରେ ଛାତି ପତେଇଲେ । ଦାବୀ ଜାହିର କରିବା ପାଇଁ ଜୀବନକୁ ବି ବାଜି ଲଗାଇବାକୁ ଭୟ କଲେ ନାହିଁ । ସେତିକିବେଳେ ମହାତ୍ମାଗାନ୍ଧି ଇଂରେଜ ମାନଙ୍କୁ ଆମ ଦେଶ ଛାଡ଼ି ଚାଲିଯିବାକୁ ଆହ୍ୱାନ ଦେଇଥିଲେ । ଏହାକୁ କୁହାଯାଉଥିଲା 'ଭାରତ ଛାଡ଼' ଆନ୍ଦୋଳନ । ଇଂରେଜମାନେ ଭାରତ ଛାଡ଼ି ନଯିବା ପର୍ଯ୍ୟନ୍ତ ଆମ ଲୋକମାନଙ୍କୁ ଲଢ଼େଇ ଜାରି ରଖିବାକୁ କହିଲେ । 'କର ବା ମର' ଡାକରା ଦେଲେ । ଏହି ଡାକରାରେ ଦେଶ ସାରା ଚହଳ ପଡ଼ିଗଲା । ମହାତ୍ମାଗାନ୍ଧୀଙ୍କର ଏ ଡାକରାକୁ ବଣଜଙ୍ଗଲର ଲୋକମାନଙ୍କ ମଧ୍ୟରେ ଯେଉଁମାନେ ପହଂଚାଇଲେ ସେମାନଙ୍କ ମଧ୍ୟରେ ମହମ୍ମଦ ବାଜୀ ଥିଲେ ଅନ୍ୟତମ । ପାଦରେ ଚାଲି ଚାଲି ବଣ ମୁଲକର ମଣିଷଙ୍କୁ ବୁଝାଇଲେ ।।

ଦେଶରୁ ଇଂରେଜମାନେ ଚାଲିଗଲେ ଆମ ଲୋକମାନଙ୍କର ଦୁଃଖ ଦୂର ହୋଇଯିବ । ଏ ବିଶ୍ୱାସ ସେ ଲୋକମାନଙ୍କୁ ଦେଲେ । ଲୋକମାନେ ବିଶ୍ୱାସ କଲେ । ଇଂରେଜ ସରକାର କରିଥିବା ଆଇନ୍‌କାନୁନ୍‌କୁ ଆଉ ମାନିଲେ ନାହିଁ । ସରକାରଙ୍କୁ ହଇରାଣ କରିବାପାଇଁ ପୋଲ ଭାଙ୍ଗିଲେ । ଟେଲିଫୋନ ଖୁଣ୍ଟି ଉପାଡ଼ିଲେ, ଜଙ୍ଗଲ କାଟିଲେ ଏମିତି ଅନେକ କଥା ।

ସେହି ମହମ୍ମଦ ବାଜୀଙ୍କୁ ବର୍ତ୍ତମାନ ଶହେ ବର୍ଷ । ତାଙ୍କ ବ୍ୟତୀତ ନବରଙ୍ଗପୁରରେ ଆଉ କୌଣସି ସ୍ୱାଧୀନତା ସଂଗ୍ରାମୀ ଜୀବିତ ଅବସ୍ଥାରେ ନାହାନ୍ତି । ଏହି ଶତାୟୁ ଓ ଶେଷ ସ୍ୱାଧୀନତା ସଂଗ୍ରାମୀଙ୍କ ସଂପର୍କରେ କିଛି କଥା-

## ବାଲ୍ୟ ଜୀବନ

ମହମ୍ମଦ ବାଜୀଙ୍କ ପୂର୍ବ ପୁରୁଷ ରାୟଗଡ଼ ବାସିନ୍ଦା ଥିଲେ । ତାଙ୍କ ଜେଜେ ବାପା ମହମ୍ମଦ ସରୀଫ୍ ଓ ଜେଜେମା ମଗନ ବିବି । ତାଙ୍କ ପୁତ୍ର ମହମ୍ମଦ କାସିମ୍ ରାୟଗଡ଼ ସ୍କୁଲରେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ପାଠପଢ଼ା ସାରି ସେ ରାୟଗଡ଼ ଛାଡ଼ି ଜୟପୁର ଆସିଥିଲେ । ଏଠାରେ ଏକ ବିଦ୍ୟାଳୟରେ ମାସିକ ସାତଟଙ୍କା ବେତନରେ ଶିକ୍ଷକତା କଲେ । ସେ ଭଲ ଇଂରାଜୀ କହିପାରୁଥିଲେ ଓ ଲେଖି ପାରୁଥିଲେ । ସେଥିପାଇଁ ତାଙ୍କୁ ନବରଙ୍ଗପୁର ତହସିଲ୍ ଅଫିସରେ କିରାଣୀ ଚାକିରୀରେ ରଖାଗଲା । ମାସକୁ ଦରମା ୧୫ଟଙ୍କା । ତାଙ୍କର ଦୁଇଜଣ ସ୍ତ୍ରୀ ଥିଲେ । ଚାନ୍ଦ ବିବି ଓ ଛପମ୍ମା ବିବି । ମହମ୍ମଦ କାଶୀମ୍ ବହୁକୁଟୁମ୍ବୀ ମଣିଷଟିଏ ଥିଲେ । ପ୍ରଥମ ସ୍ତ୍ରୀ ଚାନ୍ଦ ବିବିଙ୍କର ୨୧ ଜଣ ସନ୍ତାନ ଜନ୍ମ ହୋଇଥିଲେ । କିନ୍ତୁ ବଞ୍ଚିଥିଲେ ମାତ୍ର ୯ଜଣ । ମହମ୍ମଦ ବାଜୀ ତାଙ୍କ ମାତାଙ୍କର କୋଡ଼ିଏତମ ସନ୍ତାନ । ନବରଙ୍ଗପୁରର ସୁନାରୀ ସାହିରେ ତାଙ୍କର ଜନ୍ମ । ୧୯୧୭ ମସିହା ଜାନୁଆରୀ ୨୦ ତାରିଖରେ ତାଙ୍କର ଜନ୍ମ । ମାତ୍ର ଅଢ଼େଇ ବର୍ଷ ବୟସରେ ମହମ୍ମଦ ବାଜୀ ତାଙ୍କ ମାଆଙ୍କୁ ହରେଇଥିଲେ । ତାଙ୍କର ବଡ଼ ଭଉଣୀ ଇମାମ୍ ବିବି ମା' ଛେଉଣ୍ଡ ଛୁଆ ମାନଙ୍କ ଲାଳନ ପାଳନ କରିଥିଲେ ।

ନବରଙ୍ଗପୁର ପ୍ରାଥମିକ ବିଦ୍ୟାଳୟରେ ସେ ତାଙ୍କର ବାଲ୍ୟଶିକ୍ଷା ଗ୍ରହଣ କରିଥିଲେ । ସେତେବେଳେ ସେହି ସ୍କୁଲରେ ଉଭୟ ଓଡ଼ିଆ ଓ ତେଲୁଗୁରେ ପାଠପଢ଼ା ଆରମ୍ଭ କରିଥିଲେ । ସେହି ସ୍କୁଲରେ ଲକ୍ଷ୍ମୀଚନ୍ଦ୍ର ଦାସ, ରଘୁନାଥ ଚୌଧୁରୀ ଓ ସଦାନନ୍ଦ ମହାନ୍ତି ମଧ୍ୟ ପଢୁଥିଲେ । ଅନ୍ୟର ଦୁଃଖ ସହିପାରୁନଥିଲେ । ଯଥାସାଧ୍ୟ ସାହାଯ୍ୟ କରିବା ପାଇଁ ବାହାରି ପଡୁଥିଲେ । ମହମ୍ମଦ ବାଜୀଙ୍କର ଏମାନଙ୍କ ସହ ମନ ମିଳିଲା । ସେମାନେ ସମସ୍ତେ ସାଙ୍ଗ ହେଇଗଲେ । ଏମାନଙ୍କ ବନ୍ଧୁତା ପରବର୍ତ୍ତୀ ସମୟରେ ସ୍ୱାଧୀନତା ସଂଗ୍ରାମ ପାଇଁ ବହୁତ ଉପଯୋଗୀ ହେଲା ।

ସ୍କୁଲରେ ପଢୁଥିବାବେଳେ ସେ ତାଙ୍କ ପ୍ରଧାନ ଶିକ୍ଷକ ଉମେଶ ଚନ୍ଦ୍ର ମହାନ୍ତିଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇଥିଲେ । ସପ୍ତମ ଶ୍ରେଣୀରେ ବୁଦ୍ଧ ଦେବଙ୍କ ବିଷୟରେ ପଢ଼ି ସେ ନିଜ ଜୀବନରେ ଅହିଂସା ବ୍ରତ ଗ୍ରହଣ କରିଥିଲେ । ସେହି ପିଲାଦିନୁ ସେ ମାଛ, ମାଂସ ଖାଇବା ଛାଡ଼ିଦେଲେ । ନିଜେ ଇସଲାମ୍ ଧର୍ମ ଗ୍ରହଣ କରିଥିବା ପରିବାରର ସନ୍ତାନଟିଏ ହେଲେ ସୁଦ୍ଧା ସେ ସବୁ ଧର୍ମକୁ ସମ୍ମାନ ଦେଉଥିଲେ । ମସଜିଦ୍‌କୁ ଯାଇ ନମାଜ୍ ପଢୁଥିଲେ ଓ ମନ୍ଦିରକୁ ଯାଇ ଠାକୁର ଦର୍ଶନ କରୁଥିଲେ । ପୁରାଣ ଶୁଣୁଥିଲେ । ଏଥିପାଇଁ ଘରେ ଭାଇମାନଙ୍କଠାରୁ ମାଡ଼ ଗାଳି ଖାଉଥିଲେ । ତଥାପି ଲୁଚି ଲୁଚି ସେ ପୁରାଣ ଶୁଣୁଥିଲେ । ନବରଙ୍ଗପୁରରୁ ପାଠପଢ଼ା ସାରି ସେ ହାଇସ୍କୁଲ ପାଠ ପଢ଼ିବା ପାଇଁ ଜୟପୁର ଗଲେ । ସେ ଯେଉଁ ସ୍କୁଲରେ ଯୋଗ ଦେଲେ ସେହି ସ୍କୁଲରେ ସଦାଶିବ ତ୍ରିପାଠୀ ବିଜ୍ଞାନ ଶିକ୍ଷକ ଥିଲେ । ମହମ୍ମଦ ବାଜୀଙ୍କ ସହପାଠୀ ଲକ୍ଷ୍ମୀଚନ୍ଦ୍ର ଦାସ ମଧ୍ୟ ତାଙ୍କ ସହ ପାଠ ପଢ଼ିବାକୁ ଜୟପୁର ଯାଇଥିଲେ । ସେହିଠାରେ ସେ ଅଷ୍ଟମ ଶ୍ରେଣୀ ଯାଏଁ ପାଠ ପଢ଼ିଥିଲେ ।

ସେତେବେଳକୁ ଅବିଭକ୍ତ କୋରାପୁଟ ଜିଲ୍ଲାରେ ରାଧାକୃଷ୍ଣ ବିଶ୍ୱାସରାୟ, ସଦାଶିବ ତ୍ରିପାଠୀ ଓ ରାଧାମୋହନ ସାହୁ ଗାନ୍ଧି କଥା ପ୍ରଚାର କରିସାରିଲେଣି । ସେମାନଙ୍କ ପ୍ରେରଣାରେ ଅନେକ ଲୋକ ନିଜ ସୁଖ ସ୍ୱାଚ୍ଛନ୍ଦ୍ୟ ଛାଡ଼ି କଂଗ୍ରେସରେ ମିଶିଲେଣି । ଦେଶ ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ହେଲେଣି । ୧୯୩୫ ମସିହାରେ ସେମାନଙ୍କ ସହ ଆଉ ଜଣେ ସଂଗ୍ରାମୀ ମହମ୍ମଦ ବାଜୀ ମିଶିଗଲେ ।

ଲକ୍ଷ୍ମୀଚନ୍ଦ୍ର ଦାସଙ୍କ ସହ ସେ ଗାଁକୁ ଗାଁ ବୁଲିଲେ । ଲୋକ ମାନଙ୍କ ପାଖରେ ପହଞ୍ଚିଲେ । ମହାତ୍ମା ଗାନ୍ଧି ବିଭିନ୍ନ ସଭା ସମିତିରେ ଯେଉଁ ଭାଷଣ ଦେଉଥିଲେ, ଯେଉଁ ବାର୍ତ୍ତା ଦେଉଥିଲେ ମହମ୍ମଦ ବାଜୀ ସ୍ଥାନୀୟ ଭାଷାରେ ତାହା ଲୋକମାନଙ୍କ ପାଖରେ ପହଂଚାଇଲେ । ସ୍ଥାନୀୟ ଲୋକମାନଙ୍କ ଶୋଷଣ କଷଣ ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଏକଜୁଟ୍ ହେବା ପାଇଁ ଆହ୍ୱାନ ଦେଲେ ।

ଗାଁ ଗାଁରେ ଗାନ୍ଧୀ ଗୁମାସ୍ତା ସୃଷ୍ଟି କଲେ । ଅନ୍ୟାନ୍ୟ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ସହ ମିଶି ସେ ଦେଶରୁ ଇଂରେଜମାନଙ୍କୁ ତଡ଼ିବା ପାଇଁ ଦିନ ରାତି ଏକାକାର କରିଦେଲେ ।

## ନିଜକୁ ଯୋଗ୍ୟ କଲେ

ମହମ୍ମଦ ବାଜୀଙ୍କୁ ଯେତେବେଳେ ୧୮ ବର୍ଷ ବୟସ ସେ ପହଞ୍ଚିଲେ ଜୟପୁରର ସୁନାରୀ ସାହିରେ ଥିବା ସଦାଶିବ ତ୍ରିପାଠୀଙ୍କ ଘରେ । ସେଇଠି ସେ ରାଧାମୋହନ ସାହୁଙ୍କ ସଂପର୍କରେ ଆସିଲେ । ମହମ୍ମଦ ବାଜୀଙ୍କୁ କଂଗ୍ରେସର ଚାରିଅଣିଆ ସଭ୍ୟ ସଂଘଭୁକ୍ତ କଲେ । ହେଲେ ସେତେବେଳେ କଂଗ୍ରେସ କର୍ମୀ ହେବାକୁ ହେଲେ ଚାରିଅଣା ପଇସା ଦେଇ ପ୍ରଥମେ କଂଗ୍ରେସର ପ୍ରାଥମିକ ସଭ୍ୟ ହେବାକୁ ହେଉଥିଲା । ବିବାହ କରି ଘର ସଂସାର କଲେ ଦେଶ ମାଆ ପାଇଁ ସମୟ ଦେଇ ପାରିବେ ନାହିଁ ବୋଲି ସେ ଭାବିଲେ । ତେଣୁ ସେ ସାରା ଜୀବନ ଅବିବାହିତ ରହିଲେ । ଦେଶକୁ ନିଜ ଘର ବୋଲି ଗ୍ରହଣ କଲେ ।

ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ଗୁରୁ ରୂପେ ମାନିଥିଲେ ମହମ୍ମଦ ବାଜୀ । ଦେଶକୁ ସ୍ୱାଧୀନ କରିବା କାର୍ଯ୍ୟରେ ଆଗୁସାର ହେଲେ କେତେଗୁଡ଼ିଏ ନୀତିନିୟମ ମାନି ଚଳିବାକୁ ପଡ଼ିବ । ସତ୍ୟ ଓ ଅହିଂସା ହେବ ଜୀବନର ମୂଳ ମନ୍ତ୍ର । ଜଣେ ସଚ୍ଚା କଂଗ୍ରେସ କର୍ମୀ ହେବାକୁ ହେଲେ ମହାତ୍ମା ଗାନ୍ଧୀଙ୍କର ଏକାଦଶ ବ୍ରତ ପାଳନ କରିବାକୁ ପଡ଼ିବ । ଏହି ଏକାଦଶ ବ୍ରତ ହେଲା –

ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅସଂଗ୍ରହ, ଶରୀର ଶ୍ରମ, ଅସ୍ୱାଦ, ସର୍ବତ୍ର ଭୟ ବର୍ଜନ, ସର୍ବଧର୍ମ ସମଭାବ, ସ୍ୱଦେଶୀ ଭାବନା, ବିନମ୍ର, ବ୍ରତନିଷ୍ଠା ।

ମହାତ୍ମା ଗାନ୍ଧୀ କହୁଥିଲେ – କଂଗ୍ରେସ କର୍ମୀ କାହାକୁ ହିଂସା କରିବ ନାହିଁ, ସତ୍ୟ କହିବ, ଚୋରି କରିବ ନାହିଁ, ଶରୀର ଶ୍ରମ କରିବ । ଆବଶ୍ୟକ ଖାଦ୍ୟ ଗ୍ରହଣ କରିବ, ଭୟ କରିବ ନାହିଁ । ସବୁ ଧର୍ମ ପ୍ରତି ସମ୍ମାନ ଦେଖାଇବ । ଆମ ଦେଶରେ ତିଆରି ହେଉଥିବା ଜିନିଷ ବ୍ୟବହାର କରିବା, ଜାତିଭେଦ ଭାବ ରଖିବ୍ ନାହିଁ । ମହମ୍ମଦ ବାଜୀ ସେତେବେଳ ପର୍ଯ୍ୟନ୍ତ ମହାତ୍ମା ଗାନ୍ଧୀଙ୍କୁ ଦେଖି ନଥିଲେ । କିନ୍ତୁ ଶ୍ରୀଯୁକ୍ତ ରାଧାକୃଷ୍ଣ ବିଶ୍ୱାସରାୟଙ୍କୁ ଅନୁସରଣ କରି ସେ ପ୍ରଥମେ ଏହି ଏଗାରଟି ବ୍ରତକୁ ନିଜ ଜୀବନରେ ପାଳନ କଲେ । ଏହାଦ୍ୱାରା ସେ ନିଜ ଭିତରେ ଯଥେଷ୍ଟ ଆତ୍ମବଳ ସଂଚୟ କରିପାରିଲେ । ୧୯୩୯ ମସିହା ଆରମ୍ଭରେ  ଜୟପୁରର ନୂଆପୁଟଠାରେ ରାଧାକୃଷ୍ଣ ବିଶ୍ୱାସରାୟ ଓ ସଦାଶିବ ତ୍ରିପାଠୀଙ୍କ ଚେଷ୍ଟାରେ ଏକ କଂଗ୍ରେସ ତାଲିମ କେନ୍ଦ୍ର ପ୍ରତିଷ୍ଠା ହୋଇଥିଲା । ଏଠାରେ ଅବିଭକ୍ତ କୋରାପୁଟ ଜିଲ୍ଲାର ୩୫୦ ଜଣ କର୍ମୀ ଯୋଗ ଦେଇଥିଲେ । ଏହି ତାଲିମ କେନ୍ଦ୍ରରେ କର୍ମୀମାନଙ୍କୁ ରାଜନୀତି ସଂପର୍କରେ ପ୍ରାଥମିକ ଜ୍ଞାନ ଦିଆଗଲା । ସେମାନଙ୍କୁ ଗାଁ ଗାଁ ବୁଲାଯାଉଥିଲା । ଗାଁ ଗହଳରେ ରୋଗ ହେବାର କାରଣ ବୁଝି ତାର କେମିତି ନିରାକରଣ କରାଯିବ ସେ କଥା ବୁଝେଇ ଦିଆଯାଉଥିଲା । ଗାଁକୁ ସଫାସୁତୁରା ରଖିବା, ମହୁ ଚାଷ କରିବା, କପା ଚାଷ କରିବା, ଅରଟରେ ସୂତା କାଟିବା ଆଦି ଶିଖା ଯାଉଥିଲା  ମୁଖ୍ୟତଃ ଚରିତ୍ର ଗଠନ ଉପରେ ଗୁରୁତ୍ୱ ଦିଆଯାଉଥିଲା । ରାଜ୍ୟରୁ ଲୋକେ ତାଲିମ ଦେବା ପାଇଁ ଆସୁଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ଆଚାର୍ଯ୍ୟ ହରିହର, ଗୋକୁଳା ନନ୍ଦ ମହାନ୍ତି, ପଣ୍ଡିତ ଗୋଦାବରୀଶ ମିଶ୍ର ଇତ୍ୟାଦି । ନବରଙ୍ଗପୁର ଅଂଚଳରୁ ଲକ୍ଷ୍ମୀଚନ୍ଦ୍ର ଦାସ, ସଦାଶିବ ତ୍ରିପାଠୀ, ରଘୁନାଥ ଚୌଧୁରୀ, ରବିସିଂ ମାଝୀ, (କୋଇଲାରି ଗ୍ରାମ)ସନୁ ମାଝୀ, ରାମଚନ୍ଦ୍ର ପୂଜାରୀ, ପାସୁରୁ ନାୟକ, ଖଗପତି ପୂଜାରୀ, ରତନ ନାୟକ, ମାଧବ ଶବର, ଦୁର୍ଯ୍ୟୋଧନ ମାଝୀ, ବଳରାମ ନାୟକ, ମାଧବ ପ୍ରଧାନୀ, ଚୈତନ୍ୟ ସାଠିଆ, ଧନୀ କଲାର, ଶୁକମନ ଭତରା, ପର୍ଶୁରାମ ମାଳି, ରତନ ଭତରା, ଲଇଖଣ ଜନ୍ତରା ପ୍ରଭୃତି ତାଲିମ ପାଉଥିଲେ । ଏମାନଙ୍କ ସହ

ମହମ୍ମଦ ବାଜୀ ମଧ୍ୟ ଏହି ନୂଆପୁଟ ତାଲିମ କେନ୍ଦ୍ରରୁ ତିନିମାସ ତାଲିମ ନେଲେ । ତାଲିମ ନେଇ ସାରିବା ପରେ ମହମ୍ମଦ ବାଜୀ ଜଣେ ସଂପୂର୍ଣ୍ଣ ଭିନ୍ନ ମଣିଷ ହୋଇଗଲେ । କାୟମନୋବାକ୍ୟରେ ସେ ଦେଶ ଓ ଜାତିପାଇଁ ନିଜକୁ ଉତ୍ସର୍ଗ କରିଦେଲେ । ଦେଶକୁ ନିଜ ଘର ବୋଲି ଗ୍ରହଣ କରିନେଇଥିବା ବାଜୀବାବୁଙ୍କ ପାଦ ଆଉ ଅଟକିଲା ନାହିଁ । ସେ ମାଡ଼ିଚାଲିଲେ ଆଗକୁ । ଲୋକମାନଙ୍କର ଦୁଃଖ କଷ୍ଟ ବୁଝିଲେ । ଗାନ୍ଧୀଙ୍କ ବାଣୀ ପ୍ରଚାର କଲେ । ଗାଁ ଗାଁରେ ଗାନ୍ଧୀ ଗୁମାସ୍ତା ସୃଷ୍ଟି କଲେ । ହାଟକୁ ହାଟ ସଭା ସମିତି କରି ହଜାର ହଜାର ଲୋକଙ୍କୁ ଏକାଠି କଲେ । ସେମାନଙ୍କୁ ସରକାରଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ମୁଣ୍ଡ ଟେକିବାକୁ ପ୍ରେରଣା ଦେଲେ । ତାଙ୍କ ସହ ଥିଲେ ଜୀ ଆନ୍ନାଜୀ ରାଓ, ନବରଙ୍ଗପୁରର ପ୍ରଥମ କଂଗ୍ରେସର ଚାରିଅଣିଆ ସଭ୍ୟ ଓ ପ୍ରଥମେ ଖଦଡ଼ ପିନ୍ଧିଥିବା ମଣିଷ । ଲକ୍ଷ୍ମୀଚନ୍ଦ୍ର ଦାସ ତ ଥିଲେ ତାଙ୍କର ବାଲ୍ୟ ବନ୍ଧୁ । ପୁଣି ସଂଗ୍ରାମୀ ଜୀବନର ବନ୍ଧୁ ମାର୍ଗଦର୍ଶକ ଓ ବୁଦ୍ଧିଦାତା । ମହମ୍ମଦ ବାଜୀ ଓଡ଼ିଆ ପଢ଼ି ଜାଣନ୍ତି ନାହିଁ, ନବରଙ୍ଗପୁରକୁ ବ୍ରହ୍ମପୁରରୁ ବାହାରୁଥିବା ଖବରକାଗଜ ଦୈନିକ 'ଆଶା' ଆସୁଥିଲା । ଏହି ଖବର କାଗଜଟି ହିଁ ନବରଙ୍ଗପୁର ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ଦେଶ ଦୁନିଆର ଖବର ଦେଉଥିଲା । ଲକ୍ଷ୍ମୀଚନ୍ଦ୍ର ଦାସ ଏହି ଓଡ଼ିଆ ଖବର କାଗଜଟି ମହମ୍ମଦ ବାଜୀଙ୍କୁ ପଢ଼ି ଶୁଣାଇ ଦେଉଥିଲେ । ଦକ୍ଷିଣ ଓଡ଼ିଶାର ସଂଗ୍ରାମୀ ମାନଙ୍କ ପାଇଁ ସେତେବେଳେ ଏ ସମ୍ବାଦ ପତ୍ରର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ।

ମହମ୍ମଦ ବାଜୀ ସଂଗ୍ରାମ ପାଇଁ ବାଛିଥିଲେ ପଲ୍ଲୀ ଅଂଚଳକୁ । ବାହାର ଦୁନିଆର ଖବର ପହଂଚିପାରୁ ନଥିବା ଗାଁ ଗହଳିକୁ ନିଜେ ପାଦରେ ଚାଲି ଚାଲି ପହଂଚି ଯାଉଥିଲେ । ସେତେବେଳେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ପରାମର୍ଶ ଅନୁସାରେ ଅବିଭକ୍ତ କୋରାପୁଟ ଜିଲ୍ଲା ପାଇଁ କଂଗ୍ରେସର ସବ୍ କମିଟି ଗଢ଼ା ଯାଇଥିଲା । ଏହି ସବ୍ କମିଟିର ରାଧାକୃଷ୍ଣ ବିଶ୍ୱାସ ରାୟ, ଦିବାକର ପଟ୍ଟନାୟକ, ଶଶୀଭୂଷଣ ରଥ ସଭ୍ୟ ଥିଲେ । ଗାନ୍ଧୀଙ୍କର ବାଣୀ କଂଗ୍ରେସର ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ଲୋକଙ୍କ ପାଖରେ ପହଂଚାଇବା ପାଇଁ ନବରଙ୍ଗପୁର, ଡାବୁ ଗାଁ, କୋଟପାଡ଼, ଦିଗିସଲପା, ସୁନାବେଡ଼ା, ଦଶମନ୍ତପୁର,

ଗୁଣପୁର, ଜୟପୁର, ଉମରକୋଟ, ବଡ଼ ଉରଣ୍ଡି ପ୍ରଭୃତି ଛୋଟ ବଡ଼ ଜନପଦ ମାନଙ୍କରେ କଂଗ୍ରେସ ଅଫିସ୍‌ମାନ ଖୋଲିଲା । ଏହି ଅଫିସ୍ ମାନଙ୍କୁ ମଝିରେ ମଝିରେ ବଡ଼ ବଡ଼ ନେତାମାନେ ଆସନ୍ତି ଓ ପରବର୍ତ୍ତୀ କାର୍ଯ୍ୟକ୍ରମମାନ ସଂପର୍କରେ ଆଲୋଚନା ହୁଏ । ନିଷ୍ପତ୍ତିମାନ ନିଆଯାଏ । ଗାନ୍ଧୀଙ୍କର ନୂଆନୂଆ ଯୋଜନା ସଂପର୍କରେ ତୃଣମୂଳ ସ୍ତରର କର୍ମୀମାନଙ୍କ ସହ ବିଚାର ଆଲୋଚନା ହୁଏ । ଏଠାରେ ନୂଆ କର୍ମୀମାନଙ୍କୁ ସଂଘରେ ନିଆଯାଏ । ମହମ୍ମଦ ବାଜୀ ଏହି ସବୁ ତୃଣମୂଳ ସ୍ତରର କାର୍ଯ୍ୟ କରିବା ପାଇଁ ନିଜକୁ ପ୍ରସ୍ତୁତ କରିନେଲେ ।

ବଡ଼ ଭରଣ୍ଡି ଗ୍ରାମର ବଗା ପୂଜାରୀ ଥିଲେ ଜଣେ ନିଷ୍ଠାପର ସ୍ୱାଧୀନତା ସଂଗ୍ରାମୀ । ତାଙ୍କ ସହ ପରିଚୟ ହେଲା ମହମ୍ମଦ ବାଜୀଙ୍କର । ବଗା ପୂଜାରୀ ବଡ଼ ଭରଣ୍ଡିରେ ଠକ୍କର ବାପା ଆଶ୍ରମ ସ୍କୁଲ ପାଇଁ ନିଜ ଜମି ଦାନ କରିଥିଲେ । ସେହିଠାରେ ଛାତ୍ରମାନଙ୍କୁ ମହାତ୍ମାଗାନ୍ଧୀଙ୍କ ଆଦର୍ଶରେ ଶିକ୍ଷା ଦିଆଯାଉଥିଲା । ଗାଁଗହଳ ବୁଲି କାର୍ଯ୍ୟ କରିବା ପାଇଁ ମହମ୍ମଦ ବାଜୀ ବଗା ପୂଜାରୀଙ୍କୁ ଓ ଠକ୍କର ବାପା ଆଶ୍ରମକୁ ମୁଖ୍ୟ ମାଧ୍ୟମ ରୂପେ ଗ୍ରହଣ କଲେ । ବଗା ପୂଜାରୀଙ୍କୁ ଉମରକୋଟ ଥାନା ଘେରାଉ ଓ ପ୍ରଜାଙ୍କୁ ମେଳି କରିବା ଅପରାଧରେ ସରକାର ଗିରଫ କରିବା ପର୍ଯ୍ୟନ୍ତ ବଗା ପୂଜାରୀ ମହମ୍ମଦ ବାଜୀଙ୍କର ମୁଖ୍ୟ ସହଯୋଗୀ ଥିଲେ । ବାଟିବେଡ଼ା ଗାଁର ରବି ସିଂ ମାଝୀ ମହମ୍ମଦ ବାଜୀଙ୍କର ଆଉ ଜଣେ ହାତ ଗଢ଼ା ସଂଗ୍ରାମୀ । ମହମ୍ମଦ ବାଜୀଙ୍କ ବ୍ୟକ୍ତିତ୍ୱରେ ପ୍ରଭାବିତ ହୋଇ ୧୮ ବର୍ଷବୟସର ନାତି ରବିସିଂଙ୍କୁ ତା'ର ଜେଜେବାପା ଘଟୀ ମାଝୀ ଦେଶ ପାଇଁ ଲଢ଼ିବାକୁ କର୍ମୀ ଲକ୍ଷ୍ମୀଚନ୍ଦ୍ରଙ୍କୁ ସମର୍ପି ଦେଇଥିଲେ । ଯେଉଁ ମାନେ କଂଗ୍ରେସରେ ମିଶି ଦେଶ ସ୍ୱାଧୀନତା ପାଇଁ କାମ କରୁଥିଲେ ସ୍ଥାନୀୟ ଭାଷାରେ ସେମାନଙ୍କୁ କୁହାଯାଉଥିଲା ଗାନ୍ଧି ଗୁମାସ୍ତା । ମହମ୍ମଦ ବାଜୀ ରବିସିଂଙ୍କ ପରି ପ୍ରତି ଗାଁରେ ଗାନ୍ଧି ଗୁମାସ୍ତା ସୃଷ୍ଟି କରି ଚାଲିଲେ ଓ ସେମାନଙ୍କୁ ନେଇ ଇଂରେଜ ସରକାର ବିରୋଧରେ ସଂଗ୍ରାମ ଜାରି ରଖିଲେ ।

**ଏଥର ଯାତ୍ରା ଆରମ୍ଭ**

ବାଲ୍ୟକାଳରୁ ଦେଶ ଓ ଜାତି ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ ମହମ୍ମଦ ବାଜୀ । ଏବେ ସଂଗ୍ରାମ କରିବା ପାଇଁ ଦରକାର କରୁଥିବା ଭିତ୍ତିଭୂମି ବି ପ୍ରସ୍ତୁତ



ହୋଇଗଲା । ତା'ପରେ ଦୀର୍ଘ ପଥ ଯାତ୍ରା । ପଛକୁ ତ ଫେରିବାର ନାହିଁ, ଆଗକୁ ବଢ଼ିବାକୁ ହେବ । ନିଜର କର୍ମ କ୍ଷେତ୍ର ରୂପେ ସେ ବାଛି ନେଇଥିଲେ ପଲ୍ଲୀ ଅଞ୍ଚଳକୁ । ଡାବୁ ଗାଁଠାରେ ଥିବା କଂଗ୍ରେସ ଅଫିସର ପଛପଟେ ଗୋଟାଏ ଗାଁ । ଯାହାର ନାମ ଗରୁଡ଼ ଗୁଡ଼ା । ଏହି ଗାଁ ହେଲା ତାଙ୍କର ସାମୟିକ ଆଶ୍ରମ ସ୍ଥଳ । ଏହିଠାରୁ ସେ ବିଭିନ୍ନ ଅଞ୍ଚଳ ବୁଲି କଂଗ୍ରେସ ସଂଗଠନକୁ ଦୃଢ଼ କରୁଥିଲେ ଓ ଗାନ୍ଧୀ ବାଣୀ ପ୍ରଚାର କରୁଥିଲେ । ସାଙ୍ଗରେ ଯଦି କେହି ଗାନ୍ଧୀ ଗୁମାସ୍ତା ଆସିଲେ ତ ଭଲ ନଚେତ୍ ନିଜେ ଏକୁଟିଆ ପହଞ୍ଚି ଯାଉଥିଲେ ଲୋକଙ୍କ ପାଖରେ । ସେମାନଙ୍କୁ ପରିଷ୍କାର ପରିଚ୍ଛନ୍ନ ରହିବାକୁ କହୁଥିଲେ । ଚରଖା ଚଲାଇବା ଶିଖାଉଥିଲେ । ସୂତା କାଟିବା ଶିଖାଉଥିଲେ । ଲୋକମାନଙ୍କ ଭିତରେ ଥିବା କୁସଂସ୍କାର, ଅନ୍ଧ ବିଶ୍ୱାସକୁ ଦୂର କରିବା ପାଇଁ ଚେଷ୍ଟା କରୁଥିଲେ । ଛୁଆଁ ଅଛୁଆଁ ଭେଦଭାବ ନରଖିବା ପାଇଁ ଲୋକଙ୍କୁ ବୁଝାଉଥିଲେ । କେଉଁଠି କେତେବେଳେ କ'ଣ ଖାଉଥିଲେ କି ପିଉଥିଲେ ତା'ର ଠିକ୍ ଠିକଣା ନଥିଲା । କେତେବେଳେ ବଣ ଫଳମୂଳରେ କାମ ଚଳି ଯାଉଥିଲା ତ ପୁଣି କେତେବେଳେ କାହା ଘରେ ମାଣ୍ଡିଆ ଜାଉ କି ଭାତ ଗଣ୍ଡେ । କେତେବେଳେ କାହା ପିଣ୍ଡାରେ ଶୋଇ ପଡୁଥିଲେ ପୁଣି କେତେବେଳେ ଗଛମୂଳେ । ତାଙ୍କର ବେଶଭୂଷା ବି ଥିଲା ଆଡ଼ମ୍ବର ହୀନ । ପଂଜାବୀ ପାଇଜାମା ସାଙ୍ଗକୁ ଦେହରେ ନେହେରୁ

ଜ୍ୟାକେଟ ଓ ମୁଣ୍ଡରେ ଗାନ୍ଧୀ ଟୋପୀ । କାନ୍ଧରେ ପଡ଼ିଥିବା ଝୁଲାମୁଣିରେ ଡାଏରୀଟିଏ,କଲମଟିଏ, ଗୀତାଟିଏ ଓ ପିନ୍ଧିବା ପାଇଁ ଖଣ୍ଡେ ଦିଖଣ୍ଡ ଲୁଗାପଟା । ଏତିକି ଥିଲା ତାଙ୍କ ଦୀର୍ଘ ଯାତ୍ରାର ପୁଞ୍ଜି । ଏହି ପୁଞ୍ଜିରେ ସେ ନବରଙ୍ଗପୁର ଅଂଚଳର ଅଧିବାସୀଙ୍କ ହୃଦୟ ଜିଣିଲେ । ସେ ଗାଁମାନଙ୍କୁ ଗଲେ ଲୋକେ ଅତି ଆଦରରେ ତାଙ୍କୁ ଆପଣେଇଲେ ସେ ଯାହା କହିଲେ ମନ ଦେଇ ଶୁଣିଲେ । ତାଙ୍କ କଥା ଅନୁସାରେ ନିଜକୁ ଗଢ଼ିଲେ ଓ ଶେଷରେ ସ୍ୱାଧୀନତା ସଂଗ୍ରାମ ପାଇଁ କେବଳ ପଲ୍ଲୀ ମଣିଷ ପର୍ଯ୍ୟନ୍ତ ନଥିଲା ଦିଲ୍ଲୀ ପର୍ଯ୍ୟନ୍ତ ତାଙ୍କର ସଂଗ୍ରାମୀ ସଂପର୍କ ଲମ୍ବିଥିଲା ।

ନବରଙ୍ଗପୁର କଂଗ୍ରେସ କମିଟିର ସେ ଜଣେ ଥିଲେ ସକ୍ରିୟ ସଭ୍ୟ । ନିଖିଳ ଭାରତ କଂଗ୍ରେସ କମିଟିର ନିର୍ବାଚନରେ ଭାଗ ନେବାପାଇଁ ୧୯୩୭ରେ ସେ ଯାଇଥିଲେ କଟକ । ଏହି ନିର୍ବାଚନ ସୁବାଷ ଚନ୍ଦ୍ର ବୋଷ ଓ ପଟ୍ଟାଭି ସୀତାରାମାୟାଙ୍କ ମଧ୍ୟରେ ହୋଇଥିଲା । ସୁବାଷ ଚନ୍ଦ୍ର ବୋଷ ଏଥିରେ ବିଜୟ ହାସଲ କରିଥିଲେ ।

ଏହାପରେ ୧୯୩୯ ମସିହାରେ ୨ୟ ବିଶ୍ୱ ମହାଯୁଦ୍ଧ ହେଲା । ଇଂରେଜମାନେ ଆମ ଦେଶର ମତାମତ ନ ନେଇ ଭାରତ ଇଂରେଜଙ୍କ ସପକ୍ଷରେ ଯୁଦ୍ଧ ଲଢ଼ିବ ଓ ଏଥିପାଇଁ ଅର୍ଥ ସାହାଯ୍ୟ ଦେବ ବୋଲି ଘୋଷଣା କରିଦେଲେ । ଏହାର ପ୍ରତିବାଦ କରି ମହାତ୍ମା ଗାନ୍ଧୀ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ପ୍ରତ୍ୟେକ ଅଂଚଳରୁ ପାଳି କରି ସ୍ୱାଧୀନତା ସଂଗ୍ରାମୀମାନେ ବ୍ୟକ୍ତିଗତ ସତ୍ୟାଗ୍ରହ କଲେ । ସତ୍ୟାଗ୍ରହ କରିବା ପୂର୍ବରୁ ସତ୍ୟାଗ୍ରହୀ ମାନଙ୍କ ନାମ ମହାତ୍ମା ଗାନ୍ଧୀଙ୍କ ପାଖକୁ ଗଲା । ମହାତ୍ମା ଗାନ୍ଧୀ ଯେଉଁମାନଙ୍କ ନାମ ସୁପାରିଶ କଲେ ସେମାନେ ସତ୍ୟାଗ୍ରହରେ ବସିଲେ । ପ୍ରଥମ ଦଫାରେ ଅବିଭକ୍ତ କୋରାପୁଟ ଜିଲ୍ଲାର ୧୧୦ ଜଣଙ୍କ ନାଁ ଥିଲା । ସେଥିରେ ମହମ୍ମଦ ବାଜୀଙ୍କ ନାମ ସାମିଲ ଥିଲା । କିନ୍ତୁ ମହମ୍ମଦ ବାଜୀ ସତ୍ୟାଗ୍ରହରେ ବସିଲେ ନାହିଁ । ଭୟ କରି ସେ ବସୁ ନାହାନ୍ତି ବୋଲି ଅନ୍ୟ ମାନେ କହିଲେ କିନ୍ତୁ ସେ ରୋକ୍ ଠୋକ୍ ଜବାବ ଦେଇ କହିଲେ, "ଯେ ପର୍ଯ୍ୟନ୍ତ ମୁଁ ମହାତ୍ମା ଗାନ୍ଧୀଙ୍କୁ ଆଖିରେ ନ ଦେଖିଛି, ତାଙ୍କ ମୁଖର ବାଣୀ କାନରେ ନ ଶୁଣିଛି, ସେ ପର୍ଯ୍ୟନ୍ତ ମୁଁ ସତ୍ୟାଗ୍ରହ କରିବି ନାହିଁ" ।

ସତକୁ ସତ ମହାତ୍ମା ଗାନ୍ଧୀଙ୍କୁ ଦର୍ଶନ କରିବା ପାଇଁ ସେ ସାବର ମତୀ ଆଶ୍ରମ ଅଭିମୁଖେ ଯାତ୍ରା କଲେ । ସାଙ୍ଗରେ ଥିଲେ ବଡ଼ ଉରଣ୍ଡି ଠକ୍କର ବାପା ଆଶ୍ରମର କର୍ମକର୍ତ୍ତା ଶ୍ରୀଧର ରେଡ୍‌ଡ୍ରୀ, ଲକ୍ଷ୍ମଣ ସାହୁ, ବଗା ପୂଜାରୀ, ହରିଶ୍ଚନ୍ଦ୍ର ଗଉଁତିଆ ଓ ଶିବ ମାଝୀ ।

ପ୍ରଥମ ଦର୍ଶନରେ ମହାତ୍ମା ଗାନ୍ଧୀ ମହମ୍ମଦ ବାଜୀଙ୍କ ହାତ ଦୁଇଟି ଧରି ହଲେଇ ଦେଇ କହିଥିଲେ – 'ଆପ୍ କ୍ୟା ସତ୍ୟାଗ୍ରହୀ ହେ ? ଜେଲ୍ ଯାଓ, ଲାଠି ଖାଓ, ଦେଶ୍ କେ ଲିଏ କୁର୍ବାନ୍ ହୋ ।' ଅର୍ଥାତ ଆପଣ କ'ଣ ସତ୍ୟାଗ୍ରହୀ ? ଜେଲ୍ ଯାଅ, ଲାଠି ଖାଅ, ଦେଶ ପାଇଁ ନିଜକୁ ବଳି ଦେଇଦିଅ । ଏତିକି କଥା ମହମ୍ମଦ ବାଜୀଙ୍କୁ ହିମାଳୟ ପରି ଶକ୍ତ କରିଦେଲା ତାଙ୍କ ଶରୀରରେ ଦେଶ ପ୍ରେମର ନିଆଁ  ଜଳିଲା । ସେଇ ଯେଉଁ ନିଆଁ ମହାତ୍ମା ଗାନ୍ଧୀ ତାଙ୍କମନରେ ଲଗେଇ ଦେଇଥିଲେ ତାର ତାତିରେ ଶହେ ଏକ ବର୍ଷରେ ପାଦ ଦେଲା ପରେ ବି ସେମିତି ରହିଛି । ଶାରୀରିକ ଅସୁସ୍ଥତା ସତ୍ତ୍ୱେ କିଏ କେଉଁଠି ଦୁଃଖ କଷ୍ଟରେ ରହିବାର ଶୁଣିଲେ ସେ ବ୍ୟସ୍ତ ହୋଇପଡ଼ନ୍ତି । ତାଙ୍କ ସଂଗ୍ରାମୀ ଜୀବନର କଥା କହିଲା ବେଳେ ତାଙ୍କ ଦେହରେ ଶତ ସିଂହର ବଳ ମାଡ଼ିଆସେ ।

ସାବରମତୀ ଆଶ୍ରମରେ ପାଂଚ ଦିନ ରହିବା କାଳରେ ସେ ମହାତ୍ମା ଗାନ୍ଧିଙ୍କ ନିତିଦିନିଆ କାର୍ଯ୍ୟକଳାପକୁ ଦେଖୁଥିଲେ । ଆଶ୍ରମବାସୀଙ୍କ କର୍ମମୟ ଜୀବନକୁ ଅନୁଭବ କରୁଥିଲେ । ଆଶ୍ରମର ନୀତି, ନିୟମ, ଶୃଙ୍ଖଳା, କର୍ମ ତତ୍ପରତା ସବୁ କିଛି ତାଙ୍କୁ ମୁଗ୍ଧ କଲା । ମହାତ୍ମା ଗାନ୍ଧୀ ତାଙ୍କ ହାତ ଧରି ଯେଉଁ ଦୁଇ ପଦ କଥା କହିଥିଲେ ତାହା ମନ୍ତ୍ର ଶକ୍ତି ରୂପେ ତାଙ୍କୁ ଉତ୍ସାହିତ କରିଦେଲା । ସେ ଆଉ ଥୟ ହୋଇ ରହିପାରିଲେ ନାହିଁ । ଗାନ୍ଧୀ ଦର୍ଶନ ପରେ ୧୯୪୧ରେ ସେ ପ୍ରଥମେ ବ୍ୟକ୍ତିଗତ ସତ୍ୟାଗ୍ରହୀ ହେଲେ । ନବରଙ୍ଗପୁର ମସଜିଦ୍ ନିକଟରେ ଯୁଦ୍ଧକୁ ଧନ ଜନ ନଦେବା ପାଇଁ ଘୋଷଣା କରି ଦୁଇହଜାର ଲୋକଙ୍କ ଉପସ୍ଥିତିରେ ପୁଲିସ୍ ଦ୍ୱାରା ଗିରଫ ହେଲେ ।

ପୁଲିସ୍ ଆସି ତାଙ୍କୁ ଗିରଫ କରି ନବରଙ୍ଗପୁର ଥାନାକୁ ନେଇଗଲା । ସେଇଠି ବିଚାର ହୋଇ ତାଙ୍କୁ ଛଅମାସ ଦଣ୍ଡ ଓ ୫୦ ଟଙ୍କା ଜରିମାନା

ହୋଇଥିଲା । ତାଙ୍କୁ ନବରଙ୍ଗପୁରରୁ କୋରାପୁଟ ଜେଲ୍‌କୁ ନିଆଗଲା । ସେ ସମୟର କାରାଗାରର ଅବସ୍ଥା ଅତ୍ୟନ୍ତ କଦର୍ଯ୍ୟ ଥିଲା । ଯେତିକି ବନ୍ଦୀ ରହିବା କଥା ତା'ଠାରୁ ଆହୁରି ବହୁ ସଂଖ୍ୟକ ବନ୍ଦୀ ରହୁଥିଲେ । ପରିବେଶ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ଥିଲା । ଥରେ କାହାକୁ ରୋଗବ୍ୟାଧି ହେଲେ ତାହା ଭଲ ହେବା କାଠିକର ପାଠ ହେଉଥିଲା । ଅନେକ ବନ୍ଦୀ ଚିକିତ୍ସା ଅଭାବରୁ ମୃତ୍ୟୁବରଣ କରୁଥିଲେ । ବଗା ପୂଜାରୀଙ୍କ ପରି ଗାନ୍ଧି ଗୁମାସ୍ତାମାନେ ସେହି ଜେଲ୍ ଭିତରେ ଶହିଦ୍ ହୋଇଗଲେ । ସେତେବେଳେ କୋରାପୁଟ ଜେଲ୍‌ରେ ମାଥିଲିର ସଂଗ୍ରାମୀ ଲକ୍ଷ୍ମଣ ନାୟକ ସତ୍ୟାଗ୍ରହ କରି ଜେଲ୍ ଯାଇଥିଲେ । ଏହି କାରାଗାରରେ ସେ ସଂଗ୍ରାମୀ ବିଶ୍ୱନାଥ ପଟ୍ଟନାୟକଙ୍କ ସହ ପରିଚିତ ହୋଇଥିଲେ । ଲକ୍ଷ୍ମୀଚନ୍ଦ୍ର ତ୍ରିପାଠୀ ମଧ୍ୟ ଏହି ଠାରେ ସଜା ଭୋଗୁଥିଲେ । ମହମ୍ମଦ ବାଜୀଙ୍କୁ ଛଅମାସ ଜେଲ୍ ଭୋଗିବାକୁ ଥିଲା । କିନ୍ତୁ ତାଙ୍କର ଉତ୍ତମ ବ୍ୟବହାର ଶାନ୍ତ ନମ୍ର ଓ ଶୃଙ୍ଖଳିତ ଆଚରଣ ହେତୁ ତାଙ୍କୁ ୧୫ଦିନ ପୂର୍ବରୁ ମୁକ୍ତ କରି ଦିଆଯାଇଥିଲା ।

ଏହା ଥିଲା ତାଙ୍କ ଜୀବନର ପ୍ରଥମ ଜେଲ୍‌ଯିବା । ଜେଲ୍‌ରୁ ଆସିବା ପରେ ସେ ଆହୁରି ଶକ୍ତ ହୋଇଗଲେ । ଆହୁରି ନିର୍ଭୀକ ହୋଇଗଲେ । ତାଙ୍କର ଆତ୍ମବିଶ୍ୱାସ ବଢ଼ିଗଲା । ସେ ସଂଗ୍ରାମ ଜାରି ରଖିଲେ ।

ଏଥର ଜେଲ୍‌ରେ ଥିବା ସମୟରେ ଗୋଟାଏ ଘଟଣା ଘଟିଥିଲା । କଏଦୀ ମାନଙ୍କୁ ଯେଉଁ ଖାଦ୍ୟ ଦିଆଯାଉଥିଲା ସବୁ ଥିଲା ପଚା, ଗନ୍ଧିଆ, ଗମୁରା, ନିମ୍ନ ମାନର ଜିନିଷ । ତାହା ସେମାନେ ଖାଇପାରୁ ନଥିଲେ । ସେମାନେ ଏହା ବିରୁଦ୍ଧରେ ଅଭିଯୋଗ କଲେ । ଫଳରେ ଜେଲ୍‌ର ଉତ୍ତ୍ୟକ୍ତ ହୋଇ କଏଦୀ ମାନଙ୍କୁ ବାଡ଼ିଆ ପିଟା କଲେ । ସୋନୁ ମାଝୀ ଏହାର ପ୍ରତିବାଦ କରିବାରୁ ତାଙ୍କୁ ମଧ୍ୟ ମାଡ଼ ଖାଇବାକୁ ପଡ଼ିଲା । ସୋନୁ ମାଝୀଙ୍କ ମୁଣ୍ଡରେ ଥିବା କଳା ମଚ୍ ମଚ୍ କେଶ କେରାକ କାଟି ଲଣ୍ଡା କରିଦିଆଗଲା । କଏଦୀ ମାନେ ଏପରି ଅନ୍ୟାୟକୁ ସହ୍ୟ କଲେ ନାହିଁ, ଅନଶନ କଲେ । ଜେଲ୍‌ର କ୍ଷମା ନ ମାଗିଲେ ଓ ଉଚ୍ଚମାନର ଖାଦ୍ୟ ଦିଆନଗଲେ କେହିବି ଖାଦ୍ୟ ଗ୍ରହଣ କରିବେ ନାହିଁ ବୋଲି ଅଡ଼ି ବସିଲେ । ଜେଲ୍‌ର ଯେତେ ନିର୍ଯ୍ୟାତନା ଦେଲେ ବି ସେମାନେ

ଖାତିର୍ କଲେ ନାହିଁ । ସୁପରିଟେଣ୍ଡେଣ୍ଟଙ୍କ ପାଖକୁ ଖବର ଗଲା । ଶେଷରେ ଜେଲ୍‌ର ସତ୍ୟାଗ୍ରହୀ ମାନଙ୍କୁ କ୍ଷମା ମାଗିଲେ । ଖାଦ୍ୟ ପଦାର୍ଥରେ ଟିକେ ପରିବର୍ତ୍ତନ ଆସିଲା । ଚାରିମାସ ଦଣ୍ଡ ଭୋଗି ସାରିବା ପରେ ମହମ୍ମଦ ବାଜୀ ପୁଣି ବାହାର ଦୁନିଆକୁ ଆସିଲେ । ତାଙ୍କର ଅଭିଯାତ୍ରା ସେମିତି ଚାଲୁରହିଲା ।

ଏଥରକ କିନ୍ତୁ ସେ ତାଙ୍କର ସଂଗ୍ରାମକୁ ଟିକେ ଭିନ୍ନ ମୋଡ଼ ଦେଲେ । ସତ୍ୟାଗ୍ରହ କରି ଜେଲ୍ ଯିବା ବଦଳରେ ଜନତାଙ୍କ ପାଖକୁ ଯାଇ ସେମାନଙ୍କ ଜୀବନଧାରଣର ମାନ ଉପରକୁ ଉଠାଇବାକୁ ଚାହିଁଲେ । ସାବରମତୀ ଆଶ୍ରମରୁ ସେ ଯେଉଁ ରଚନାତ୍ମକ କାର୍ଯ୍ୟ ଦେଖି ଆସିଥିଲେ ତାହା ଲୋକମାନଙ୍କ ପାଖକୁ ନେଲେ । କର୍ମୀ ମାନଙ୍କ ସହ ମିଶି ଏକ ପଦଯାତ୍ରାର ଆୟୋଜନ କଲେ । ଲକ୍ଷ୍ମୀଚନ୍ଦ୍ର ଦାସ ଏହାର ନେତୃତ୍ୱ ନେଇଥିଲେ । ସାଙ୍ଗରେ ମହମ୍ମଦ ବାଜୀଙ୍କ ସମେତ ଅନ୍ୟ ୨୦ ଜଣ ସହଯାତ୍ରୀ । ଗାଁ ଗାଁ ବୁଲି ମଦ ନ ପିଇବା, ସଫାସୁତୁରା ରହିବା, ଧର୍ମ ଶାସ୍ତ୍ର ପଢ଼ିବା, ସର୍ବ ଧର୍ମ ପ୍ରାର୍ଥନା କରିବା, ସୂତା କାଟିବା, ଚରଖା ଚଲାଇବା, ଗାଁ ଗାଁରେ କପା ଚାଷ କରିବା ଆଦି ବିଷୟରେ ଲୋକଙ୍କୁ ସଚେତନ କଲେ । ମହାତ୍ମା ଗାନ୍ଧିଙ୍କ ସ୍ୱାଧୀନତା ଆନ୍ଦୋଳନର ଏହା ଏକ ମୁଖ୍ୟ ଅଂଶ ଥିଲା । ଲୋକମାନେ ଆତ୍ମ ନିର୍ଭରଶୀଳ ନହେଲେ, ନୈତିକ ବଳରେ ଦୃଢ଼ ନହେଲେ, ଆର୍ଥିକ କ୍ଷେତ୍ରରେ ସ୍ୱଚ୍ଛଳ ନହେଲେ ଦେଶ ସ୍ୱାଧୀନ ହେଲେ ବି ଲୋକମାନେ ମାନସିକ ସ୍ତରରେ ପରାଧୀନ ହୋଇ ରହିଯିବେ । ସ୍ୱାଧୀନ ଭାରତକୁ ଚଳାଇବାକୁ ହେଲେ ତାର ନାଗରିକ ମାନଙ୍କର ଦୃଢ଼ ମନୋବଳ ରହିବା ଆବଶ୍ୟକ । ଆତ୍ମବଳରେ ବଳୀୟାନ ହେଲେ ହିଁ ଦେଶରେ ମହାତ୍ମା ଗାନ୍ଧି କଳ୍ପନା କରିଥିବା ରାମ ରାଜ୍ୟ ସମ୍ଭବ ହୋଇପାରିବ ।

ଏହି ପଦଯାତ୍ରାରେ ସେମାନେ ପ୍ରାୟ ୫୨୦ ମାଇଲ୍ ପର୍ଯ୍ୟନ୍ତ ଚାଲିଥିଲେ । ନବରଙ୍ଗପୁର ଠାରୁ ଛତିଶଗଡ଼ର ସୀମା ଓ ଏପଟରେ କଳାହାଣ୍ଡି ସୀମା ପର୍ଯ୍ୟନ୍ତ ସେମାନଙ୍କର ଯାତ୍ରା ଥିଲା ନବରଙ୍ଗପୁରରୁ ବାହାରିଥିଲେ ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ, ସୀମାଚଳ ବେହେରା ଓ ସଦାନନ୍ଦ ମହାନ୍ତି । ରାସ୍ତାରେ ଗାନ୍ଧି ଗୁମାସ୍ତାମାନେ ସେମାନଙ୍କ ସହ ମିଶିଲେ । ସୋନୁ ମାଝୀ, ରାଇଧର ଜାନୀ,

ରବିସିଂ ମାଝୀ, ଉଦ୍ର ମାଝୀ, ସୁନାଧର ମାଝୀ, ରାମଚନ୍ଦ୍ର ମାଝୀ, ଦୁର୍ଯ୍ୟୋଧନ ମାଝୀ ପ୍ରଭୃତିଙ୍କ ଯୋଗଦାନ ଏଯାତ୍ରାକୁ ସଫଳ କରିଥିଲା ।

ପଦଯାତ୍ରା ଦ୍ୱାରା ଯେଉଁ ଶିକ୍ଷା ମିଳିଥାଏ, ସେ ଥିଲା ଜୀବନର ଶିକ୍ଷା । ଏ ଅନୁଭୂତି ମଣିଷର ଚିନ୍ତାଧାରାକୁ ବିରାଟ କରିଦିଏ । ଜ୍ଞାନର ସୀମାକୁ ବଢ଼େଇଦିଏ । ଲୋକମାନଙ୍କ ଦୁଃଖ ସୁଖରେ ଭାଗୀ ହେବାକୁ ସୁଯୋଗ ମିଳେ । ସେମାନଙ୍କ ମନ କଥା ପଢ଼ି ହୁଏ । ତେଣୁ ସେମାନଙ୍କ ପାଇଁ କାମ କରିବା ସହଜ ହୋଇଯାଏ । ଆମ ଦେଶରେ କେଉଁ କାଳୁ ଏ ପରମ୍ପରା ଅଛି । ମୁନି ଋଷିମାନେ ପଦଯାତ୍ରାରେ ଯାଉଥିଲେ । ବୁଦ୍ଧ ଓ ବିବେକାନନ୍ଦ ପଦଯାତ୍ରାରୁ ବହୁ ଅଭିଜ୍ଞତା ହାସଲ କରିଥିଲେ । ମହାତ୍ମା ଗାନ୍ଧୀ ମଧ୍ୟ କର୍ମୀମାନଙ୍କୁ ଏହି ପଦଯାତ୍ରାରେ ସାମିଲ ହେବାପାଇଁ ଆହ୍ୱାନ ଦେଉଥିଲେ । ମହମ୍ମଦ ବାଜୀ ସେହି ଦୀକ୍ଷା ନେଲେ ।

## ଅଗଷ୍ଟ ବିପ୍ଳବ

୧୯୪୨ ମସିହା ଅଗଷ୍ଟ ମାସ ୯ ତାରିଖ । ଭାରତର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ମହାତ୍ମା ଗାନ୍ଧୀ ଇଂରେଜମାନଙ୍କୁ ଆମ ଦେଶ ଛାଡ଼ି ଚାଲିଯିବା ପାଇଁ ଆହ୍ୱାନ ଦେଲେ । ଏହାକୁ ଭାରତ ଛାଡ଼ ଆନ୍ଦୋଳନ କୁହାଯାଉଥିଲା । ଏହି ଆନ୍ଦୋଳନ ସାରା ଭାରତ ବର୍ଷରେ ଏମିତି ବ୍ୟାପିଗଲା ଯେ ତାକୁ ଦମନ କରିବାପାଇଁ ଇଂରେଜମାନେ ନାକେଦମ୍ ହୋଇଗଲେ । କଂଗ୍ରେସ କର୍ମୀମାନେ ମହାତ୍ମା ଗାନ୍ଧୀଙ୍କ ଆଦେଶମାନି ଅହିଂସା ଉପାୟରେ ସଂଗ୍ରାମ କରୁଥିଲେ । ଏହି ସମୟରେ ମହାତ୍ମା ଗାନ୍ଧୀଙ୍କ 'କର ବା ମର' ଡାକରା ଦେଶବାସୀଙ୍କୁ ପ୍ରାଣମୂର୍ଚ୍ଛା ଲଢ଼ିବାପାଇଁ ପ୍ରେରଣା ଦେଲା । ଇଂରେଜ ସରକାରର ଆଇନ ମାନିଲେ ନାହିଁ ଭାରତ ବାସୀ । ଥାନା ପୋଡ଼ିଲେ, ଟେଲିଫୋନ ଖୁଣ୍ଟି ଉଡ଼େଇଲେ, କାଠ ପୋଲ ଭାଙ୍ଗିଲେ, ବଣ କାଟିଲେ । ବିଦେଶୀ ଜିନିଷ ପୋଡ଼ିଲେ । ଏମିତି କେତେ କ'ଣ । ନବରଙ୍ଗପୁରରେ ମଧ୍ୟ ଏ ସଂଗ୍ରାମ ତେଜି ଉଠିଲା । ବଡ଼ ବଡ଼ ନେତା ମାନଙ୍କୁ ସରକାର ଗିରଫ କଲେ । ପ୍ରତିବାଦ ସ୍ୱରୁପ କର୍ମୀମାନେ ଆହୁରି ସଂଗଠିତ ହୋଇ ବିଶୃଙ୍ଖଳା ସୃଷ୍ଟି

କଲେ । ସଦାଶିବ ତ୍ରିପାଠୀ, ରାଧାକୃଷ୍ଣ ବିଶ୍ୱାସ ରାୟ, ରାଧାମୋହନ ସାହୁ ମଧ୍ୟ ଗିରଫ ହୋଇ ବ୍ରହ୍ମପୁର ଜେଲ୍‌କୁ ଗଲେ । ଏବେ ସଂଗ୍ରାମ ଜାରି ରଖିବାକୁ ବାକି ରହିଲେ ମହମ୍ମଦ ବାଜୀ , ଗାନ୍ଧୀ ଗୁମାସ୍ତାମାନଙ୍କୁ ନେଇ ସଂଗ୍ରାମ ବଂଚେଇ ରଖିଲେ ।

ଏହି ଅଗଷ୍ଟ ବିପ୍ଳବ ସମୟରେ ମହମ୍ମଦ ବାଜୀ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଥିଲେ । ତାଙ୍କୁ ସହଯୋଗ କରିଥିଲେ ସଂଗ୍ରାମୀ ଲକ୍ଷ୍ମୀଚନ୍ଦ୍ର ଦାସ ଓ ସୀମାଚଳ ବେହେରା । ଅଖିଳ ଭାରତ କଂଗ୍ରେସ କମିଟିର ବମ୍ବେ ଅଧିବେଶନରେ କର୍ମୀମାନଙ୍କ ପାଇଁ ମହାତ୍ମା ଗାନ୍ଧୀ ଯେଉଁ ବାର୍ତ୍ତା ଦେଇଥିଲେ, ତାକୁ ନବରଙ୍ଗପୁର ପଠେଇ ଦେଇ ବାଟରେ ଗିରଫ ହୋଇଗଲେ ରାଧାକୃଷ୍ଣ ବିଶ୍ୱାସରାୟ । ବହୁତ କଷ୍ଟରେ ଚିଠିଟି ଆସି ନବରଙ୍ଗପୁରରେ ପହଂଚିଲା । ଏହାକୁ ଲୋକମାନଙ୍କ ପାଖରେ ପହଂଚାଇବାକୁ ହେବ । ନବରଙ୍ଗପୁର କଂଗ୍ରେସ ଅଫିସ୍‌ରେ ସାଇକ୍ଲୋଷ୍ଟାଇଲ୍ ମେସିନ୍‌ଟିଏ ଥିଲା । ମହମ୍ମଦ ବାଜୀଙ୍କ ଘର ଉପର ମେର୍ଦ୍ଧା (ଆଟୁ)କୁ ତାହା ଅଣାଗଲା । ପେଟ୍ରୋମାକ୍ସ ଲାଇଟ୍‌ରେ ଲକ୍ଷ୍ମୀଚନ୍ଦ୍ର ଦାସ, ମହମ୍ମଦ ବାଜୀ ଓ ସୀମାଚଳ ବେହେରା ବସି ହଜାର ହଜାର ସଂଖ୍ୟାରେ ସାଇକ୍ଲୋଷ୍ଟାଇଲ୍ କଲେ । ସେହି ପ୍ରଚାର ପତ୍ର ଗୁଡ଼ିକୁ ଝୁଲା ମୁଣିରେ ପକାଇ ବାଜୀ ଲୋକମାନଙ୍କୁ ବାଣ୍ଟିବା ପାଇଁ ବାହାରି ପଡ଼ିଲେ । ତାହା ପୁଣି ଲୁଚିଛପି ପୁଲିସର ଆଖି ଉହାଡ଼ରୁ । ପାପଡ଼ାହାଣ୍ଡି, ଡାବୁଗାଁ, କୋଡ଼ିଗାଁ, ଉମରକୋଟ, ରାଇଘର, ଝରିଗାଁ, ବଡ଼ ଭରଣ୍ଡି ପ୍ରଭୃତି ଜାଗାମାନଙ୍କରେ ବାଣ୍ଟିଲେ । କୌଣସି ସୂତ୍ରରୁ ପୁଲିସ୍ ପାଖରେ ଏଖବର ପହଂଚିଗଲା । ସେତେବେଳକୁ ମହମ୍ମଦ ବାଜୀ ତାଙ୍କର ଆଶ୍ରୟ ସ୍ଥଳ ଡାବୁଗାଁ, ଗରୁଡ଼ଗୁଡ଼ାର ରାଇଧର ଜାନୀଙ୍କ ଘରେ ଥିଲେ । ପୁଲିସ୍ ତାଙ୍କୁ ଧରି ବହୁତ ମାଡ଼ ମାରିଥିଲା ତାଙ୍କର ଦୁଇଟି ପଞ୍ଜରା ହାଡ଼ ଭାଙ୍ଗିଯାଇଥିଲା । ସେ ବେହୋସ୍ ହୋଇଯାଇଥିଲେ । ତାଙ୍କୁ ପୁଲିସ୍ ଡାବୁଗାଁ ଥାନା ଜିମା ଦେଇଥିଲେ । ଡାବୁଗାଁ ଥାନାରୁ ତାଙ୍କୁ ନବରଙ୍ଗପୁର ନିଆଗଲା । ସେଠାରେ ବିଚାର ହେଲା ଓ ସେ ଚାରି ମାସ ଜେଲ୍‌ଦଣ୍ଡ ଭୋଗି କୋରାପୁଟ ଜେଲ୍ ଗଲେ ।

# ଟୁରୀ ନଦୀ ଗୁଳିକାଣ୍ଡ

୧୯୪୨ ମସିହା ଅଗଷ୍ଟ ମାସ ୨୪ ତାରିଖ ଦିନ ପାପଡ଼ାହାଣ୍ଡିର ଟୁରୀ ନଦୀ ଠାରେ ଏକ ଲୋମହର୍ଷଣକାରୀ ଘଟଣା ଘଟିଥିଲା । ଇଂରେଜମାନେ ନିର୍ମମ ଭାବରେ ସଂଗ୍ରାମୀମାନଙ୍କ ଉପରେ ଗୁଳି ଚାଳନା କରିଥିଲେ । ଫଳରେ ୧୧ ଜଣ ଘଟଣା ସ୍ଥଳରେ ଶହୀଦ ହୋଇ ଯାଇଥିଲେ । ୮ ଜଣ ଗୁରୁତର ହୋଇ ଡାକ୍ତରଖାନାରେ ମୃତ୍ୟୁବରଣ କରିଥିଲେ ।

ଘଟଣାଟି ଥିଲା ଏମିତି । ଅଗଷ୍ଟ ମାସ ୨୦ ତାରିଖ ଭିତରେ ନବରଙ୍ଗପୁରର ଯେତେ ବଡ଼ ବଡ଼ କଂଗ୍ରେସ କର୍ମୀ ଥିଲେ ସମସ୍ତେ ଗିରଫ ହୋଇଗଲେ । ମହମ୍ମଦ ବାଜୀ ଯେଉଁ ପ୍ରଚାର ପତ୍ର ବାଣ୍ଟିଥିଲେ ସେଥିରେ ଲେଖାଥିଲା, ବଡ଼ ନେତାମାନେ ଗିରଫ ହୋଇଗଲା ପରେ ସାଧାରଣ କର୍ମୀମାନେ ନିଜକୁ ନେତା ବୋଲି ଭାବି କାମ କରିବେ । ସରକାର ବୋଲି କିଛି ନାହିଁ । କୌଣସି ଆଇନ ମାନ ନାହିଁ । ସରକାରକୁ କର୍ ଦିଅ ନାହିଁ, ଯୁଦ୍ଧ ପାଇଁ ଚାନ୍ଦା ଦିଅ ନାହିଁ । ବାଘସିଭନୀର ମାଧବ ପ୍ରଧାନୀ ଏବେ ଆନ୍ଦୋଳନର ଦାୟିତ୍ୱ ନେଲେ । ପ୍ରଚାର ପତ୍ରରେ ଯାହା ଲେଖାଥିଲା ସେହି ଅନୁସାରେ କ'ଣ କରାଯିବ, ସେଥିପାଇଁ ବହୁସଂଖ୍ୟାରେ କର୍ମୀମାନେ ପାପଡ଼ାହାଣ୍ଡିରୁ ଡାବୁଗାଁ ଆଡ଼କୁ ଚାଲିଲେ, ଏଖବର ପୁଲିସ୍ ପାଖରେ ପହଂଚିଗଲା । ପାପଡ଼ାହାଣ୍ଡି ନିକଟରେ ବହିଯାଉଛି ନଦୀଟିଏ । ତା ନାଁ ଟୁରୀ । ସେହି ଟୁରୀ ନଈରେ କାଠ ପୋଲଟିଏ ଥିଲା । ଡାବୁଗାଁ ଯିବାକୁ ହେଲେ ଏହି ପୋଲ ଅତିକ୍ରମ କରିବାକୁ ହୁଏ । ପୋଲ ଶେଷ ଭାଗରେ ପୁଲିସ୍‌ମାନେ ବନ୍ଧୁକ ଧରି ଜଗି ରହିଲେ । କଂଗ୍ରେସକର୍ମୀମାନେ ପୋଲ ଉପରେ ଚଢ଼ି ସେପଟକୁ ଯିବାପାଇଁ ଚାହିଁଲେ । ପୁଲିସ ଯିବାପାଇଁ ଦେଲା ନାହିଁ, କିନ୍ତୁ କର୍ମୀମାନେ ଠେଲାପେଲା ହୋଇ ଆଗକୁ ଯିବାପାଇଁ ବାହାରିଲେ । ଏଇ ଧସ୍ତାଧସ୍ତି ଭିତରେ ଜଣେ ଜଣେ କର୍ମୀଙ୍କ ହାତର ଟାଙ୍ଗିଆରେ ପୁଲିସ୍ କନେଷ୍ଟବଲ୍ ମୁତ୍ୟାଲୁର କାନ କଟିଗଲା । ପୁଲିସ୍ ଭାବିଲା କର୍ମୀମାନେ ଆକ୍ରମଣ କରୁଛନ୍ତି । ତେଣୁ ପୁଲିସ୍ ପକ୍ଷରୁ ଗୁଳି ଚାଳନା ଆରମ୍ଭ ହୋଇଗଲା । କର୍ମୀମାନେ ପ୍ରାଣ ବିକଳରେ ଯିଏ ଯୁଆଡ଼େ ଧାଇଁଲେ । ପଛରେ ଥିଲା ପୁଲିସ୍ ଫୋର୍ସ, ଆଗରେ



ପୁଲିସ୍ । ପୁଲିସ୍‌ର ବନ୍ଧୁକରୁ ଗୁଳି ବର୍ଷଣ ଚାଲିଛି, ପ୍ରାଣ ବଂଚାଇବାର କୌଣସି ରାହା ନପାଇ କର୍ମୀମାନେ ଡେଇଁ ପଡ଼ିଲେ ନଦୀ ଭିତରକୁ । ସେମାନଙ୍କର ପତ୍ତା ମିଳିଲା ନାହିଁ । ଶ୍ରାବଣ ମାସର ଭରାନଦୀ, ସୁଁ ସୁଁ ଗର୍ଜୁଛି । ଏପଟରେ ପୋଲ ଉପରେ ଗୁଳି ମାଡ଼ରେ ଗଡ଼ି ପଡ଼ିଲେଣି ୧୧ ଜଣ କର୍ମୀ । ଏ ଭୟାନକ କାଣ୍ଡରେ ଟୁରୀ ନଦୀର ପାଣି ରକ୍ତାକ୍ତ ହୋଇଗଲା । ପୁଲିସ୍ ଶହେରୁ ଉର୍ଦ୍ଧ୍ୱ ଲୋକଙ୍କୁ ଗିରଫ କରି ଚଲେଇ ଚଲେଇ ନବରଙ୍ଗପୁର ଜେଲ୍‌କୁ ନେଲା । ଗୁରୁତର ଭାବେ କ୍ଷତାକ୍ତ ହୋଇଥିବା ଲୋକମାନଙ୍କୁ ନବରଙ୍ଗପୁର ହସ୍ପିଟାଲକୁ ନିଆଗଲା । ସେଠାରେ ୮ ଜଣ ମୃତ୍ୟୁ ବରଣ କଲେ । ଆହୁରି ଅନେକ ସାରା ଜୀବନ ବିକଳାଙ୍ଗ ହୋଇ ବଂଚିଲେ ।

## ଜେଲ୍ ଜୀବନ

ମହମ୍ମଦ ବାଜୀ ଗରୁଡ଼ଗୁଡ଼ାରୁ ଗିରଫ ହେବା ପରେ ଜେଲ୍‌ରେ ରହିଥିଲେ । ସେଠାରେ ତାଙ୍କର ବିଚାର ହେଲା ଏହି ବିଚାରର ରାୟ ଅନୁସାରେ ୨ ବର୍ଷ ଛଅ ମାସ କାଳ ଜେଲ୍ ଦଣ୍ଡ ଭୋଗିବା ପାଇଁ । ତାଙ୍କୁ କୋରାପୁଟ ଜେଲ୍‌କୁ ପଠେଇ ଦିଆଗଲା । ଜେଲ୍‌ର କାଳ କୋଠରୀରେ ସେ ସଜା ଭୋଗିଲେ । ଅଗଷ୍ଟ ବିପ୍ଳବର ବହୁ ବଡ଼ ବଡ଼ ନେତା ସେତେବେଳେ ଜେଲ୍‌ରେ ଥିଲେ । ଜେଲ୍‌ର ପରିସର ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ଥିଲା । ଗାଈଗୋରୁଙ୍କ ପରି କଏଦୀମାନେ

ରହୁଥିଲେ । ଯେତିକି କଏଦୀଙ୍କର ରହିବା ପାଇଁ ସ୍ଥାନ ଥିଲା ତାଠାରୁ କାହିଁ କେତେ ଗୁଣ ଅଧିକ ଲୋକ ରହୁଥିଲେ । ଚିକିତ୍ସା ବ୍ୟବସ୍ଥା ଆଦୌ ନଥିଲା କହିଲେ ଚଳେ । ଜଣେ କମ୍ପାଉଣ୍ଡର କଏଦୀମାନଙ୍କର ରୋଗ ବଇରାଗ ହେଲେ ଔଷଧ ଦେଉଥିଲେ । ଥରେ ଜଣେ ରୋଗରେ ପଡ଼ିଲେ ତାର ମୃତ୍ୟୁ ସୁନିଶ୍ଚିତ ଥିଲା । ଖାଦ୍ୟ ପଦାର୍ଥ ତ ଆହୁରି ଦୟନୀୟ । କଏଦୀ ମାନଙ୍କର ମଳମୂତ୍ର ତ୍ୟାଗ ପାଇଁ ମଧ୍ୟ ବ୍ୟବସ୍ଥା ନଥିଲା । ପ୍ରତି କୋଠରୀର ଗୋଟାଏ କୋଣରେ ହାଣ୍ଡିଟିଏ ରଖାଯାଇଥାଏ । ସେଥିରେ କଏଦୀମାନେ ମଳମୂତ୍ର ତ୍ୟାଗ କରନ୍ତି । ସକାଳେ ତାକୁ ନେଇ ସେମାନେ ବାହାରେ ଫିଙ୍ଗନ୍ତି । ଅପରିଷ୍କାର ପରିବେଶରେ ରହିଥିବା ହେତୁ ଅଧିକାଂଶ କଏଦୀ ଘା' ଘଉଡ଼ ହୋଇ ରହୁଥିଲେ । ବୋଝ ଉପରେ ନଳିତା ବିଡ଼ା ପରି ଜେଲ୍ କର୍ମଚାରୀମାନଙ୍କର କଏଦୀଙ୍କ ଉପରେ ମାଡ଼ ଗାଳି । ଏସବୁ ଯମଯନ୍ତ୍ରଣା ଭୋଗି ଭୋଗି କଏଦୀମାନେ ଅତିଷ୍ଠ ହୋଇପଡୁଥିଲେ । କଏଦୀଙ୍କର ସଜା ଭୋଗୁଥିବା ସମୟରେ ମୃତ୍ୟୁବରଣ କରିବା କୋରାପୁଟ ଜେଲ୍‌ର ଏକ ସାଧାରଣ ଘଟଣା ଥିଲା ।

ବଡ଼ ଭରଣ୍ଡି ଗ୍ରାମର ଆଦିବାସୀ ନେତା ବଗାପୂଜାରୀଙ୍କର ମାତ୍ର ୫୪ ବର୍ଷ ବୟସରେ ଏହିଠାରେ ମୃତ୍ୟୁ ହୋଇଥିଲା । ଉମରକୋଟ ପୁଲିସର ଲାଠିମାଡ଼ରେ ସେ ଖଣ୍ଡିଆ ଖାବରା ହୋଇଥିଲେ । ପୁଣି ଅଖାଦ୍ୟ ଖାଇ ଓ ଅସ୍ୱାସ୍ଥ୍ୟକର ପରିବେଶରେ ରହି ତାଙ୍କର ପେଟ ଯନ୍ତ୍ରଣା ବାହାରିଥିଲା । ସାରା ଦେହ କାଛୁ କୁଣ୍ଡିଆରେ ସଂକ୍ରମିତ ହୋଇ ଲାଳ ରକ୍ତ ଝାଡ଼ା ହୋଇ ସେ ବିନା ଔଷଧରେ ମୃତ୍ୟୁବରଣ କରିଥିଲେ ତା ୧୧/୦୨/୧୯୪୩ଦିନ କୋରାପୁଟ ଜେଲ୍‌ରେ । ମହମ୍ମଦ ବାଜୀଙ୍କର ଆଖି ଆଗରେ ଏହି ମର୍ମନ୍ତୁଦ ଘଟଣା ଘଟିଥିଲା । ଶବ ତାଙ୍କ ଘରକୁ ପଠାଇବା ତ ଦୂର କଥା, ତାଙ୍କ ଘର ଲୋକଙ୍କୁ ଏହି ଖବର ମଧ୍ୟ ଦିଆଗଲା ନାହିଁ । ମହମ୍ମଦ ବାଜୀ, ଲକ୍ଷ୍ମୀଚନ୍ଦ୍ର ଦାସ, ବିଶ୍ୱନାଥ ପଟ୍ଟନାୟକ ତାଙ୍କ ଶବ ଉପରେ ଫୁଲ ଓ ସୁତାମାଳ ଦେଇ ଶେଷ ସମ୍ମାନ ଜଣାଇଥିଲେ ।

ମହମ୍ମଦ ବାଜୀଙ୍କର ଉତ୍ତମ ଓ ଶୃଙ୍ଖଳିତ ବ୍ୟବହାର ପାଇଁ ଏଥର ମଧ୍ୟ ତାଙ୍କୁ ଜେଲ୍‌ଦଣ୍ଡରୁ ଛଅ ମାସ ରିହାତି ମିଳିଥିଲା । କିନ୍ତୁ ବାହାରେ ପରିସ୍ଥିତି

ବିଶୃଙ୍ଖଳିତ ହେବାର ଆଶଙ୍କା କରି ପୁଲିସ୍ ତାଙ୍କୁ ସେହି ଜେଲ୍ ଭିତରେ ନଜର ବନ୍ଦୀ କରି ରଖିଲା ୧୯୪୨ରୁ ୧୯୪୫ ମସିହା ଯାଏଁ । ବିଶ୍ୱନାଥ ପଟ୍ଟନାୟକଙ୍କୁ ମଧ୍ୟ ସେତେବେଳେ ସମଦଶା ଭୋଗ କରିବାକୁ ପଡ଼ିଥିଲା । ମହମ୍ମଦ ବାଜୀଙ୍କ ବାପା ଓ ଭାଇମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲା ସରକାର । କାହାକୁ ଚାକିରୀରୁ ବାହାର କରିଦେଲା ତ ଆଉ କାହାକୁ ନଜରବନ୍ଦୀରେ ରଖିଲା । ତଥାପି ମହମ୍ମଦ ବାଜୀ ଭୟକଲେ ନାହିଁ କି ସଂଗ୍ରାମରୁ ଓହରିଲେ ନାହିଁ । ବରଂ ତାଙ୍କର ଜିଦ୍ ଆହୁରି ବଢ଼ିଗଲା । ଜେଲ୍ ଦଣ୍ଡ ଲାଠିମାଡ଼କୁ ଆଉ ଖାତିର କଲେ ନାହିଁ । ତାଙ୍କର ଆତ୍ମବଳ ବଢ଼ିଗଲା । ଜେଲ୍‌ରେ ବଡ଼ ବଡ଼ ସଂଗ୍ରାମୀମାନଙ୍କ ସଂସ୍ପର୍ଶରେ ଆସିବା ଫଳରେ ତାଙ୍କର ଦୃଷ୍ଟିକୋଣ ପ୍ରସାରିତ ହେଲା । କୋରାପୁଟ ଜେଲ୍‌ରେ ନଜରବନ୍ଦୀ ଥିବା ବେଳେ ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କୁ କଟକ ଜେଲ୍‌ରୁ ଅଣାଯାଇ ଏଠାରେ ରଖାଯାଇଥିଲା । ମହମ୍ମଦ ବାଜୀ, ବିଶ୍ୱନାଥ ପଟ୍ଟନାୟକ ଗୋଟିଏ ସେଲ୍‌ରେ ଥିଲେ । ଶ୍ରୀ ଦ୍ୱିବେଦୀ ଏଠାରେ ୨୦ ମାସ କାଳ ଥିଲେ । ଏଠାରେ ସେ ମ୍ୟାଲେରିଆରେ ପୀଡ଼ିତ ହୋଇପଡ଼ିଲେ । ଯାହାଫଳରେ ଲିମା ସଂଓ୍ୱାଙ୍କୁ ତାଙ୍କ ସେବାକାରୀ ଭାବେ ଦାୟିତ୍ୱ ଦିଆଯାଇଥିଲା ।

ମହମ୍ମଦ ବାଜୀଙ୍କୁ ଇତି ମଧ୍ୟରେ କୋରାପୁଟରୁ କଟକ କେନ୍ଦ୍ର ଜେଲ୍‌କୁ ପଠାଇ ଦିଆଗଲା । ଏହି ଜେଲ୍ ତାଙ୍କ ପାଇଁ ତୀର୍ଥ କ୍ଷେତ୍ର ପରି ଥିଲା । ଏଠାରେ ସେ ଏକ ସମୟରେ ଓଡ଼ିଶାର ତୁଙ୍ଗ ନେତାମାନଙ୍କ ସଂସ୍ପର୍ଶରେ ଆସିଥିଲେ । ଏପରି ସୌଭାଗ୍ୟ ଖୁବ୍ କମ୍ ଲୋକଙ୍କୁ ମିଳେ । ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମା ଦେବୀ, ମାଳତୀ ଚୌଧୁରୀ, ମନମୋହନ ଚୌଧୁରୀ, ଆଚାର୍ଯ୍ୟ ହରିହର, ମଙ୍ଗଳା ସେନ, ଭୈରବ ମହାନ୍ତି, ନିଶାମଣି ଖୁଣ୍ଟିଆ, ବିଜୟାନନ୍ଦ ପଟ୍ଟନାୟକଙ୍କ ପରି ବହୁ ପୁଣ୍ୟାତ୍ମାଙ୍କୁ ଏଠାରେ ଦେଖି ସେ ନିଜ ଜୀବନକୁ ଧନ୍ୟ ମନେ କରିଥିଲେ । ସେମାନଙ୍କ ବଂଚିବା ଶୈଳୀ, ନିର୍ଭୀକତା, ଜ୍ଞାନ, ଦେଶ ଓ ଜାତି ପାଇଁ ନିଜକୁ ଉତ୍ସର୍ଗ କରିବାର ସଂକଳ୍ପରେ ଅନୁପ୍ରାଣିତ ହୋଇଥିଲେ ମହମ୍ମଦ ବାଜୀ । ଆଗାମୀ ସଂଗ୍ରାମୀ ଜୀବନ ପାଇଁ କଟକ ଜେଲ୍‌ର ଅନୁଭୂତି ତାଙ୍କ ପାଇଁ

ବେଶ୍ ଉପାଦେୟ ହୋଇଥିଲା । ମହମ୍ମଦ ବାଜୀଙ୍କର ସରଳତା ସମସ୍ତଙ୍କୁ ମୁଗ୍ଧ କରିଥିଲା । ସମସ୍ତେ ତାଙ୍କୁ ଭଲ ପାଉଥିଲେ । ଛଅ ମାସ କାଳ ସେ ସେଠାରେ ଥିଲେ । ଯେଉଁ ଦିନ ସେ ଜେଲ୍‌ରୁ ମୁକୁଳି ଆସିଲେ ସେଦିନ ନିଜେ ଗୋପବନ୍ଧୁ ଚୌଧୁରୀ ତାଙ୍କ ଗଳାରେ ଫୁଲମାଳ ଦେଇଥିଲେ । କେବଳ ସେତିକି ନୁହେଁ ପୂର୍ବଦିନ ରାତିରେ ମହମ୍ମଦ ବାଜୀଙ୍କ ବିଦାୟ ଉପଲକ୍ଷେ ଗୋପବନ୍ଧୁ ଚୌଧୁରୀ ଗୋଟାଏ ବିଦାୟ କାଳୀନ ଭୋଜିର ଆୟୋଜନ କରିଥିଲେ । ଛଳ ଛଳ ଆଖିରେ ଏହି ମହା ମଣିଷମାନେ ମହମ୍ମଦ ବାଜୀଙ୍କୁ ବିଦାୟ ଦେଇଥିଲେ । ଆହୁରି ଉତ୍ସାହ ଉଦ୍ଦୀପନା ସହ ସଂଗ୍ରାମ କରିବାର ଆଶୀର୍ବାଦ ଦେଇଥିଲେ । ଫେରିବା ବେଳେ ମା' ରମାଦେବୀଙ୍କ ଘରେ ଗୋଟାଏ ଦିନ ରହିଥିଲେ । ଅନେକ ଅଭିଜ୍ଞତା ହାସଲ କରି ସେ ନିଜ ଜନ୍ମମାଟି ନବରଙ୍ଗପୁରକୁ ଫେରି ଆସିଲେ । ଏ ମାଟିର ମଣିଷଙ୍କ ଦୁଃଖ ସୁଖରେ ସାମିଲ ହୋଇଗଲେ । ପୁଣି ସେମାନଙ୍କୁ ଏକଜୁଟ୍ କଲେ । ମହାତ୍ମାଗାନ୍ଧୀଙ୍କ ରଚନାତ୍ମକ କାର୍ଯ୍ୟ ସଂପର୍କରେ ସେମାନଙ୍କୁ ବୁଝେଇଲେ । ନିଜର ତ ଘର ସଂସାର ନଥିଲା । ସାରା ଦୁନିଆକୁ ନିଜ ଘର ପରିବାର ରୂପେ ଗ୍ରହଣ କଲେ । ମଣିଷ ସମାଜର କଲ୍ୟାଣ ପାଇଁ ନିଜକୁ ସମର୍ପି ଦେଲେ । କଟକ ଜେଲ୍‌ରେ ସେ ଯେଉଁ ମହାତ୍ମାମାନଙ୍କ ଠାରୁ ଆର୍ଶୀବାଦ ପାଇଥିଲେ ତାହା କ'ଣ କେବେ ବ୍ୟର୍ଥ ହୋଇଥାନ୍ତା । ସେ ଜଣେ ସମର୍ପିତ ସଂଗ୍ରାମୀ ପାଲଟି ଗଲେ ।

## ସ୍ୱାଧୀନତା ପରେ

ଶେଷରେ ସେହି ବହୁ ବାଞ୍ଛିତ ମୁହୂର୍ତ୍ତ ଆସିଲା । ଦୀର୍ଘ ଗୋଟାଏ ଦଶନ୍ଧି ଧରି ନବରଙ୍ଗପୁରର ସଂଗ୍ରାମୀମାନେ ଯେଉଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କରୁଥିଲେ ତାର ଫଳ ମିଳିଲା । ଦେଶ ସ୍ୱାଧୀନ ହେଲା । ସାରା ଭାରତ ବର୍ଷ ସ୍ୱାଧୀନତାର ମହୋତ୍ସବ ପାଳିଲେ । ନବରଙ୍ଗପୁର ସହର ବି ସେଦିନ ଆନନ୍ଦ ମୁଖର ହୋଇ ଉଠିଲା । ଅବିଭକ୍ତ କୋରାପୁଟ ଜିଲ୍ଲାର ୧୦୧ ଜଣ ସ୍ୱାଧୀନତା ସଂଗ୍ରାମୀଙ୍କ ନାଁରେ ସହରର ଗଳିକନ୍ଦିରେ ୧୦୧ଟି ତୋରଣ ତିଆରି ହୋଇଥିଲା । ମହମ୍ମଦ ବାଜୀ ସ୍ୱାଧୀନତା ସଂଗ୍ରାମ ବେଳେ ଗାଁ ଗଣ୍ଡା ବୁଲି ବୁଲି ଲୋକମାନଙ୍କୁ ସରକାରଙ୍କ ବିରୋଧରେ ଲଢ଼ିବାପାଇଁ ଉତ୍ସାହିତ କରୁଥିଲେ । ସ୍ୱାଧୀନତା ପରେ ସେଇମାନେ କିପରି ସ୍ୱାଧୀନତାର ସ୍ୱାଦ ଅନୁଭବ କରିବେ ସେଥିପାଇଁ ଲାଗି

ପଡ଼ିଥିଲେ । ନାଚଗୀତ ଭଜନ କୀର୍ତ୍ତନ ଶୋଭା ଯାତ୍ରା ଭୋଜିଭାତରେ ସ୍ୱାଧୀନତା ଦିବସ ପାଳିତ ହେଲା । ସଦାଶିବ ତ୍ରିପାଠୀ ସ୍ୱାଧୀନ ଭାରତର ପତାକା ଉଡ଼ାଇ ନବରଙ୍ଗପୁରବାସୀଙ୍କୁ ଉଦ୍‌ବୋଧନ ଦେଇଥିଲେ ।

ମହମ୍ମଦ ବାଜୀ ଭଲ ପାଉଥିଲେ ଗାଁକୁ । ମହାତ୍ମାଗାନ୍ଧୀ କହୁଥିଲେ ଗାଁ ଭିତରେ ହିଁ ଭାରତ ବର୍ଷର ଆତ୍ମା ରହିଛି । ଗାଁ ମଣିଷଙ୍କ ଭିତରେ ମଣିଷ ପଣିଆ ରହିଛି । ମହମ୍ମଦ ବାଜୀ ମହାତ୍ମାଗାନ୍ଧୀଙ୍କ ବାଣୀକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିଲେ । ଦେଶ ସ୍ୱାଧୀନତାପରେ ଓ ମହାତ୍ମାଗାନ୍ଧୀଙ୍କ ମୃତ୍ୟୁପରେ ଅନେକ କଂଗ୍ରେସ କର୍ମୀ ମହାତ୍ମାଗାନ୍ଧୀଙ୍କୁ ଭୁଲିଗଲେ । କ୍ଷମତାରେ ରହିବା ପାଇଁ ସକଳ ନୀତି ଆଦର୍ଶକୁ ପଛକୁ ଫିଙ୍ଗିଦେଲେ । କ୍ଷମତା ପାଇଁ କନ୍ଦଳ ଲାଗି ରହିଲା । ମହମ୍ମଦ ବାଜୀଙ୍କୁ ଏହା ବହୁତ କଷ୍ଟ ଦେଲା । ସେ କଂଗ୍ରେସରୁ ଇସ୍ତଫା ଦେଲେ ଗାଁ ଗହଳର ଲୋକଙ୍କ ସେବା କରିବା ପାଇଁ । ଗାନ୍ଧୀଜୀଙ୍କର ରଚନାତ୍ମକ କାର୍ଯ୍ୟ ଦ୍ୱାରା ଗାଁର ବିକାଶ କରିବାକୁ ସ୍ଥିର କଲେ । କିଛି ଭଲ ମଣିଷ ଗଢ଼ିବାକୁ ଚାହିଁଲେ । ଗାଁ ଗାଁ ବୁଲି ସେମାନଙ୍କର ଦୁଃଖସୁଖ ସହ ସାମିଲ ହେଲେ । ସେମାନଙ୍କୁ ନୀତି ଶିକ୍ଷା ଦେଲେ । ପାଠ ପଢ଼ିବା ପାଇଁ ଉତ୍ସାହିତ କଲେ । ଠିକ୍ ଏହି ସମୟରେ ତାଙ୍କ ଦୃଷ୍ଟି ସମ୍ମୁଖକୁ ଆଉ ଜଣେ ମହାପୁରୁଷ ଆସିଲେ । ତାଙ୍କ ଜୀବନର ଗତିପଥ ପୁଣି ଗୋଟାଏ ମୋଡ଼ ଧରିଲା । ମହାତ୍ମା ଗାନ୍ଧୀଙ୍କ ପଟ୍ଟଶିଷ୍ୟ ବିନୋବା ଭାବେ ଆରମ୍ଭ କଲେ ଭୂଦାନ ଓ ସର୍ବୋଦୟ ଆନ୍ଦୋଳନ । ମହମ୍ମଦ ବାଜୀଙ୍କ ପରି ବହୁ କଂଗ୍ରେସ କର୍ମୀ, ଯେଉଁ ମାନେ ପ୍ରକୃତରେ ଦେଶ ସେବାକୁ ନିଜ ଜୀବନର ବ୍ରତ ବୋଲି ଗ୍ରହଣ କରିଥିଲେ ସେମାନେ ଏହି ଆନ୍ଦୋଳନରେ ଯୋଗ ଦେଲେ ।

ସର୍ବୋଦୟ ଆନ୍ଦୋଳନର ଏକୋଇଶଟି ମୁଖ୍ୟ ଆଦର୍ଶ ଥିଲା । ଅସ୍ପୃଶ୍ୟତା ଉଚ୍ଛେଦ, ଜାତିଭେଦ ନିରାକାରଣ, ସାଂପ୍ରଦାୟିକ ସଦ୍‌ଭାବ, ଖଦୀ ଓ ଗ୍ରାମୋଦ୍ୟୋଗ, ମୌଳିକ ଶିକ୍ଷା, ଗ୍ରାମ ସଫେଇ, ସ୍ତ୍ରୀପୁରୁଷ ସମାନତା, ମାତୃଭାଷାର ବିକାଶ, ହିନ୍ଦୀକୁ ରାଷ୍ଟ୍ରଭାଷା ମାନ୍ୟତା ଦେବା ପାଇଁ ପ୍ରଚାର, ଆଦିବାସୀଙ୍କ ବିକାଶ, ରାଜ୍ୟ ରାଜ୍ୟ ମଧ୍ୟରେ ସୁସଂପର୍କ , ଆର୍ଥିକ ସମାନତା,



ଉନ୍ନତ ପ୍ରଣାଳୀର ଚାଷ, ଶ୍ରମିକ ସଂଗଠନ, ଗୋ ସେବା, କୁଷ୍ଠ ରୋଗୀଙ୍କ ସେବା, ଦୁଃଖୀରଙ୍କିଙ୍କ ସେବା ଓ ପ୍ରାକୃତିକ ଚିକିତ୍ସାକୁ ଲୋକପ୍ରିୟ କରିବା ।

୧୯୪୮ ମସିହା ମାର୍ଚ୍ଚ ତାରିଖରୁ ଏକ ତିନିଦିନିଆ ସର୍ବ ଭାରତୀୟ ସମ୍ମିଳନୀ ବସିଥିଲା । ଏହାର ନାମ ଥିଲା ଅଖିଳ ଭାରତ ରଚନାତ୍ମକ କର୍ମୀ ସମ୍ମିଳନୀ । ଏହା ସେବାଗ୍ରାମଠାରେ ଅନୁଷ୍ଠିତ ହୋଇଥିଲା । ଜବାହରଲାଲ୍ ନେହେରୁ ଜୟପ୍ରକାଶ ନାରାୟଣ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ଅରୁଣା ଆସଫ୍ ଅଲ୍ଲୀ ପ୍ରଭୃତି ତୁଙ୍ଗ କଂଗ୍ରେସ କର୍ମୀମାନେ ଯୋଗ ଦେଇଥିଲେ । ଓଡ଼ିଶାରୁ ଯାଇଥିଲେ ଗୋପବନ୍ଧୁ ଚୌଧୁରୀ, ରମା ଦେବୀ, ଈଶ୍ୱର ଲାଲ ବ୍ୟାସ, ମନମୋହନ ଚୌଧୁରୀ, ହରେକୃଷ୍ଣ ମହତାବ, କିଶୋରୀ ଲାଲ, ବିଶ୍ୱନାଥ ପଟ୍ଟନାୟକ ପ୍ରମୁଖ ।

"ସର୍ବୋଦୟ ସମାଜ" ଗଠନ ହେଲା । ଓଡ଼ିଶାରେ ସର୍ବୋଦୟ ଆନ୍ଦୋଳନ ସଫଳତାର ସହ କାର୍ଯ୍ୟ କରିଥିଲା । ଗୋପବନ୍ଧୁ ଚୌଧୁରୀଙ୍କ ପରିବାର ଏହି ଆଦର୍ଶରେ ସଂପୂର୍ଣ୍ଣ ସମର୍ପିତ ହୋଇଗଲେ । ମହମ୍ମଦ ବାଜୀ ମଧ୍ୟ ଓଡ଼ିଶାର ଅନ୍ୟ କଂଗ୍ରେସ କର୍ମୀଙ୍କ ପରି ନିଃସ୍ୱାର୍ଥପର ଭାବରେ ନିଜକୁ ପୁଣି ଥରେ ଜନ କଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଦେଲେ । ବିଶ୍ୱନାଥ ପଟ୍ଟନାୟକ ଥିଲେ

ତାଙ୍କର ଘନିଷ୍ଠ ସହଯୋଗୀ । ଗାଁ ଗାଁ ବୁଲି ସାହୁକାର, ମହାଜନ, ଜମି ମାଲିକମାନଙ୍କୁ , ଭୂମିହୀନମାନଙ୍କୁ ଜମିଦାନ କରିବାକୁ ବୁଝାଉଥିଲେ ।

ବିହାରର ଚାନ୍ଦିଲିଠାରେ ୧୯୫୩ ମସିହାରେ ତୃତୀୟ ସର୍ବୋଦୟ ସମ୍ମିଳନୀ ହୋଇଥିଲା । ବିଶ୍ୱନାଥ ପଟ୍ଟନାୟକଙ୍କ ସହ ମହମ୍ମଦ ବାଜୀ ମଧ୍ୟ ଏଥିରେ ଯୋଗ ଦେବାର ଗୌରବ ଅର୍ଜନ କରିଥିଲେ । ବିନୋବାଜୀ ତାଙ୍କୁ ଉତ୍ସାହିତ କରି କହିଥିଲେ, କୋରାପୁଟ ଜିଲ୍ଲାରେ ଭୂଦାନ କାର୍ଯ୍ୟର ବହୁ ଆବଶ୍ୟକତା ଅଛି । ତେଣୁ ପୂର୍ଣ୍ଣ ପ୍ରାଣରେ କାମରେ ଲାଗିପଡ଼ିବାକୁ ହେବ ।

ମହମ୍ମଦ ବାଜୀ ନବରଙ୍ଗପୁର ଅଂଚଳରେ ତାଙ୍କ କାର୍ଯ୍ୟକ୍ରମ ଆରମ୍ଭ କରିଦେଲେ । ତାଙ୍କର ପ୍ରଥମ ଭୂଦାନ ସଭା କରିଥିଲେ ତୁମ୍ଭର୍ଲା ହାଟରେ । ପାପଡ଼ାହାଣ୍ଡିଠାରୁ ଭବାନୀପାଟଣା ରାସ୍ତାରେ ନଅ କିଲୋମିଟର ଦୂରରେ ଅବସ୍ଥିତ । ସେହି ଗାଁର ଜଣେ ଜମିମାଲିକ ହରିଶ୍ଚନ୍ଦ୍ର ଭୁକ୍ତା ମହମ୍ମଦ ବାଜୀଙ୍କ ଦ୍ୱାରା ପ୍ରଭାବିତ ହେଲେ ଓ ନିଜର ଭଲ ଜମି ପାଂଚ ଏକର ପଟ୍ଟା ସହ ମହମ୍ମଦ ବାଜୀଙ୍କୁ ଦାନ କରିଥିଲେ । ଏହା ତାଙ୍କର ଭୁଦାନ ଓ ସର୍ବୋଦୟ ଆନ୍ଦୋଳନ ପ୍ରତିଥିବା ବିଶ୍ୱାସକୁ ଦୃଢ଼ କରିଥିଲା । ସେ ଏହାପରେ ପରେ ଆହୁରି ଅନେକ ଦୟାବାନ ବ୍ୟକ୍ତି ଜମି ଦାନ କଲେ । ଏ ଆନ୍ଦୋଳନର ରାଜ୍ୟସ୍ତରୀୟ ନେତୃବର୍ଗ ଗୋପବନ୍ଧୁ ଚୌଧୁରୀ, ରମାଦେବୀ, ମାଳତୀ ଚୌଧୁରୀ, ମନମୋହନ ଚୌଧୁରୀ ଆଦିଙ୍କ ସହ ଯୋଗାଯୋଗ ରଖି ସେ କାର୍ଯ୍ୟମାନ କରୁଥିଲେ । ସ୍ୱରାଜ ଆଶ୍ରମ ଦ୍ୱାରା ପରିଚାଳିତ ରଚନାତ୍ମକ କାର୍ଯ୍ୟମାନଙ୍କରେ ଭାଗ ନେଉଥିଲେ । ବିଶ୍ୱନାଥ ପଟ୍ଟନାୟକଙ୍କ ପ୍ରତିଷ୍ଠିତ କୁଜେନ୍ଦ୍ରୀ ଆଶ୍ରମ ସହିତ ବାଜୀବାବୁଙ୍କ ଯୋଗାଯୋଗ ନିବିଡ଼ ଥିଲା ।

ବିନୋବାଜୀଙ୍କ ସହ ଏକ ବର୍ଷକାଳ ମହମ୍ମଦ ବାଜୀ ପଦଯାତ୍ରାରେ ଥିଲେ । ଉତ୍ତରପ୍ରଦେଶ, ହରିଆଣା, ମହାରାଷ୍ଟ୍ର, ପଞ୍ଜାବ, ରାଜସ୍ଥାନ ଆଦି ଅଂଚଳ ବୁଲି ସେ ଲୋକଙ୍କର ସମସ୍ୟାକୁ ଅତି ପାଖରେ ଦେଖିଥିଲେ । ବିନୋବାଜୀଙ୍କ କାମ କରିବାର ଶୈଳୀ ଦେଖି ଚମତ୍କୃତ ହୋଇଥିଲେ । କେବଳ ବିନୋବା ନୁହନ୍ତି, ସର୍ବଭାରତୀୟ ସ୍ତରର ଅନେକ ସର୍ବୋଦୟ ନେତାଙ୍କ ଦ୍ୱାରା

ସେ ପ୍ରଭାବିତ ହୋଇଥିଲେ । ସେମାନଙ୍କ କାର୍ଯ୍ୟପ୍ରଣାଳୀ ଅନୁସରଣ କରି ସେ ନିଜ ଅଂଚଳବାସୀଙ୍କ ପାଇଁ କାମ କଲେ ।

ବିନୋବାଜୀଙ୍କ ଓଡ଼ିଶା ଆଗମନ ଭୂଦାନ ଆନ୍ଦୋଳନର ଇତିହାସରେ ସ୍ମରଣୀୟ ଅଧ୍ୟାୟ । ବାଲେଶ୍ୱରଠାରୁ ଓଡ଼ିଶାର ସର୍ବୋଦୟକର୍ମୀମାନେ ତାଙ୍କୁ ପାଛୋଟି ଆଣିଥିଲେ । ଗୋପବନ୍ଧୁ ଚୌଧୁରୀ ସେହିଠାରେ ଏକ ଲକ୍ଷ କୋଡ଼ିଏ ହଜାର ଜମିର ପଟ୍ଟା ବିନୋବାଙ୍କ ହସ୍ତରେ ଅର୍ପଣ କରିଥିଲେ । ଓଡ଼ିଶାର ବିଭିନ୍ନ ଅଂଚଳ ବୁଲି ସାରି କୋରାପୁଟ ଜିଲ୍ଲାକୁ ମଧ୍ୟ ସେ ଆସିଥିଲେ । ନବରଙ୍ଗପୁରରେ ବିନୋବାଜୀଙ୍କ ସମ୍ବର୍ଦ୍ଧନାପାଇଁ ମହମ୍ମଦ ବାଜୀ ବହୁ ଲୋକଙ୍କୁ ଏକାଠି କରିଥିଲେ । ବିନୋବାଜୀଙ୍କ ସହ ମାଆ ରମାଦେବୀ, ନବକୃଷ୍ଣ ଚୌଧୁରୀ, ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ଶରତ ମହାରଣା, ଗୁଣନିଧି ମହାନ୍ତି ପ୍ରମୁଖ ବହୁ ବଡ଼ ବଡ଼ ଲୋକ ଓ ନବରଙ୍ଗପୁର ଅଂଚଳର ସ୍ଥାନୀୟ କର୍ମୀ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ସଦାଶିବ ତ୍ରିପାଠୀ, ଲକ୍ଷ୍ମୀଚନ୍ଦ୍ର ତ୍ରିପାଠୀ, ଜଗନ୍ନାଥ ତ୍ରିପାଠୀ ଓ ମହମ୍ମଦ ବାଜୀ ପ୍ରମୁଖ । ଗାଁ ଗହଳ ଲୋକଙ୍କ ସହ ମହମ୍ମଦ ବାଜୀ ପୂର୍ବରୁ ଭଲ ସଂପର୍କ ସ୍ଥାପନ କରିଥିଲେ । ମହମ୍ମଦ ବାଜୀଙ୍କୁ ଜଣେ ସଚ୍ଚାକର୍ମୀ ବୋଲି ଗାଁ ଲୋକେ ବିଶ୍ୱାସ କରୁଥିଲେ । ବିନୋବାଜୀଙ୍କୁ ବିପୁଳ ସଂଖ୍ୟାରେ ଏହି ଲୋକମାନେ ସ୍ୱାଗତ କରିଥିଲେ । ବିନୋବାଜୀଙ୍କ ବାଣୀଦ୍ୱାରା ଏ ଅଂଚଳର ଲୋକେ ଯଥେଷ୍ଟ ପ୍ରଭାବିତ ହେଲେ । ଏହାର ସୁଯୋଗ ନେଇଥିଲେ ମହମ୍ମଦ ବାଜୀ । ପୂର୍ବରୁ ଲୋକମାନଙ୍କର ମହମ୍ମଦ ବାଜୀଙ୍କ ଉପରେ ଆସ୍ଥା ଥିଲା । ବିନୋବାଜୀଙ୍କୁ ଦର୍ଶନ କରିବାପରେ ଏ ଅଂଚଳର ଲୋକେ ଭୂମିଦାନ କରିବା ପାଇଁ ମୁକ୍ତ ହସ୍ତ ହୋଇଗଲେ । ମହମ୍ମଦ ବାଜୀ ନବରଙ୍ଗପୁର ଅଂଚଳରୁ ୭୦,୦୫୮,୮୩ ଏକର ଜମି ସଂଗ୍ରହ କରି ପାରିଥିଲେ । ୩୭ଟି ଗ୍ରାମକୁ ଗ୍ରାମ ଦାନ ସୂତ୍ରରେ ପାଇଥିଲେ । ମହମ୍ମଦ ବାଜୀଙ୍କର ଏହା ବହୁତ ବଡ଼ ସଫଳତା ଥିଲା ।

୧୯୫୭ଠାରୁ ୧୯୭୩ ପର୍ଯ୍ୟନ୍ତ ମହମ୍ମଦ ବାଜୀ କୋରାପୁଟ ଜିଲ୍ଲା ସର୍ବୋଦୟ ସମିତିର ସଭାପତି ଥିଲେ । ୧୯୭୩ ମସିହାରେ ଓଡ଼ିଶା ନବଜୀବନ ମଣ୍ଡଳର ସଭାପତି ଦାୟିତ୍ୱ ତୁଲାଇଥିଲେ । ଅଖିଳ ଭାରତୀୟ ସର୍ବୋଦୟ

ସମିତିର ମଧ୍ୟ ସେ ଜଣେ ସକ୍ରିୟ ସଭ୍ୟ ଥିଲେ । ତାଙ୍କ କର୍ମମୟ ଜୀବନ ଗାଁ ଠାରୁ ମହାନଗର ଯାଏ ଲମ୍ବିଥିଲେ ସୁଦ୍ଧା ଗାଁ ଥିଲା ତାଙ୍କର ପ୍ରିୟ ଭୂଇଁ । ଗାଁ ମଣିଷର ପୀଡ଼ା ପୀଡ଼ନକୁ ସେ ନିଜ ସମସ୍ୟା ବୋଲି ଭାବୁଥିଲେ । ଏଗୁଡ଼ିକର ସମାଧାନ କରିବାପାଇଁ ସେ ଗୋଟିଏ କେନ୍ଦ୍ରସ୍ଥଳ ସ୍ଥିର କଲେ । ଡାବୁଗାଁ ଠାରୁ ଉମରକୋଟ ରାସ୍ତାରେ ଆଠ ଦଶ ମାଇଲ ଦୂରତାରେ ପଡ଼େ ଗାଁଟିଏ ବିଜାପୁର । ସ୍ୱାଧୀନତା ଆନ୍ଦୋଳନ ସମୟରେ କଂଗ୍ରେସ କର୍ମୀଙ୍କ ପାଇଁ ଏହା ଏକ ନିରାପଦ ସ୍ଥାନ ଥିଲା । କଂଗ୍ରେସ ଅଫିସ୍ ପାଇଁ ଘରଟିଏ ବି ତିଆରି ହୋଇଥିଲା । ସେ ଗାଁରେ ଦୁଇ ଜଣ ସ୍ୱାଧୀନତା ସଂଗ୍ରାମୀ ଥିଲେ ଧନୁର୍ଜୟ ମାଝୀ ଓ ଭଗବାନ ଭତ୍ରା । ଏମାନେ ଏଅଂଚଳର ଗଳିକନ୍ଦିରେ କଂଗ୍ରେସର ପ୍ରଚାରପତ୍ର ବାଣ୍ଟିବାରେ ଓ ସଭା ସମିତି କରିବାରେ ସାହାଯ୍ୟ କରୁଥିଲେ । ନନ୍ଦୀ ଭୃଙ୍ଗୀଙ୍କ ପରି ସେମାନେ ମହମ୍ମଦ ବାଜୀଙ୍କୁ ସବୁପ୍ରକାର ସହାୟତା ଦେଉଥିଲେ । ଗୋପବନ୍ଧୁ ଚୌଧୁରୀ ଓ ରମା ଦେବୀ ଯେତେବେଳେ ବିଜାପୁର ଆସିଥିଲେ ଏହି ଦୁଇ କର୍ମୀ ସେମାନଙ୍କୁ ନିଜ ଘରେ ରହିବାର ବ୍ୟବସ୍ଥା କରିଥିଲେ, କେବଳ ଏ ଦୁଇଜଣ ନୁହନ୍ତି ଓଡ଼ିଶା ତଥା ସର୍ବଭାରତୀୟ ସ୍ତରର ବହୁ ପୁଣ୍ୟାତ୍ମା ମାନଙ୍କର ପାଦ ଧୂଳି ଏଠାରେ ପଡ଼ିଥିଲା । ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀ ଏଠାରେ ନବଜୀବନ ମଣ୍ଡଳ କେନ୍ଦ୍ରଟିଏ ଖୋଲିଥିଲେ । ଗାନ୍ଧି ବିଚାର ସର୍ବୋଦୟ ଭାବନାର ବିଚାର ଆଲୋଚନା, ପ୍ରଚାର ପ୍ରସାର ପାଇଁ ଏହି କେନ୍ଦ୍ରଟି ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଏ ମାଟିରେ ପାଦ ଦେଇଥିଲେ ରାମ ମନୋହର ଲୋହିୟା, ଜୟ ପ୍ରକାଶ ନାରାୟଣ, ବାବୁଲାଲ ମିତ୍ତଲ, ଅଲେଖ ପାତ୍ର, ଈଶ୍ୱର ଲାଲ ବ୍ୟାସ ଆଦି ଅନେକ । ଏ ପୂଣ୍ୟ ଭୂମିକୁ ମହମ୍ମଦ ବାଜୀ ତାଙ୍କର କର୍ମ ଭୂମି ରୂପେ ବାଛିଲେ । ଏଠିକାର ଲୋକମାନେ ଅନ୍ଧ ବିଶ୍ୱାସ ଓ କୁସଂସ୍କାର ଭିତରେ ବୁଡ଼ି ରହିଥିଲେ । ପରିଷ୍କାର ପରିଚ୍ଛନ୍ନ କ'ଣ ଜାଣି ନଥିଲେ । ବିଭିନ୍ନ ପ୍ରକାର ରୋଗ ବଇରାଗରେ ସଢୁଥିଲେ । ଏମାନଙ୍କ ମନ ଭିତରେ ସଚେତନତା ଆଣିବା ପାଇଁ ସେ ଗଠନ କରିଥିଲେ – "ଗାନ୍ଧୀ ବିନୋବା ଆଶ୍ରମ" ।

ମହମ୍ମଦ ବାଜୀ ଏହି ଗାଁକୁ ପୋଷ୍ୟ ଗ୍ରାମରୂପେ ଗ୍ରହଣ କଲେ । ଏଠାରେ କୂଅ ପୋଖରୀ ଖୋଳାଇଲେ । ମହିଳା କର୍ମୀମାନଙ୍କୁ ରଖି ଲୋକମାନଙ୍କୁ

ସଫାସୁତୁରା ରହିବା ଶିଖାଇଲେ । ଲୋକମାନେ କପା ଚାଷ କଲେ । ସୂତା କାଟିଲେ । ଚରଖା ଚଲେଇଲେ । ଲୁଗା ବୁଣିବା ଶିଖିଲେ । ଏହି କାମରେ ନୟନାମାଝୀ ତାଙ୍କ କାର୍ଯ୍ୟରେ ସହଭାଗୀ ଥିଲେ ତିରୀ ଅଳକା ଆଶ୍ରମ ପରି । ଲୋକମାନଙ୍କର ଜୀବନଧାରା ବଦଳିଗଲା । ମହମ୍ମଦ ବାଜୀଙ୍କର ଏହି ସେବାମୂଳକ ମନୋଭାବ ଦେଖି ସର୍ବୋଦୟ ନେତାମାନେ ତାଙ୍କୁ ଆହୁରି ଗୁରୁ ଦାୟିତ୍ୱ ଦେଲେ, ଆଦିବାସୀ ଜନଜାତିଙ୍କର ବିକାଶପାଇଁ ମାଳତୀ ଦେବୀ ନବଜୀବନ ମଣ୍ଡଳ କେନ୍ଦ୍ରମାନ ଖୋଲିଥିଲେ । ଉମରକୋଟଠାରୁ ରାଇଘର ପର୍ଯ୍ୟନ୍ତ ଯେତେସବୁ ନବଜୀବନ ମଣ୍ଡଳ କେନ୍ଦ୍ର ଥିଲା ତାର ପରିଚାଳନା ଦାୟିତ୍ୱରେ ଥିଲେ ବାଜୀବାବୁ । ବିଜାପୁର, ତାରାଗାଁ ଓ ବାଟିବେଡ଼ା ଗ୍ରାମଦାନୀ ସଂଘମାନଙ୍କର ସେ ତତ୍ତ୍ୱାବଧାନ କରୁଥିଲେ ।

ବିଜାପୁରଠାରେ ଯେଉଁ ଆଶ୍ରମଟି କରାଗଲା, ତା ଅଧୀନରେ ୪୦ଗ୍ରାମ ରହିଲା । ଏହି ଗ୍ରାମ ମାନଙ୍କର ସର୍ବାଙ୍ଗୀନ ଉନ୍ନତି ପାଇଁ ଚରଖା ସଂଘ ଓ ସର୍ବ ସେବା ସଂଘମାନ ଗଠିତ ହେଲା । ମହମ୍ମଦ ବାଜୀ ଏହି ଦିନ ମାନଙ୍କରେ ପୂର୍ଣ୍ଣପ୍ରାଣରେ ସକ୍ରିୟ ରହି ଏ ଗାଁମାନଙ୍କର ମାନଚିତ୍ରକୁ ବଦଳାଇ ଦେଇଥିଲେ ।

ଗ୍ରାମର ଉନ୍ନତିରେ ଦେଶର ଉନ୍ନତି କଥା କହୁଥିଲେ ମହାତ୍ମାଗାନ୍ଧି । ସ୍ୱାଧୀନତା ପରେ ଦୁଇ ତିନି ଦଶନ୍ଧି ଧରି କର୍ମୀମାନେ ମହାତ୍ମାଗାନ୍ଧିଙ୍କ ସ୍ୱପ୍ନକୁ ସାକାର କରିବାକୁ ଲାଗି ପଡ଼ିଥିଲେ । ବିଭିନ୍ନ କାରଣରୁ ତାହା ବେଶିଦିନ ତିଷ୍ଠି ରହି ପାରିଲା ନାହିଁ । କେବଳ ବିଜାପୁର କିମ୍ବା ଓଡ଼ିଶାରେ ନୁହେଁ, ସାରା ଭାରତରେ ଭୂଦାନ ଓ ଗ୍ରାମଦାନର ପରିଣତି ଏହିଭଳି ଦୁଃଖ ଦାୟକ ହୋଇଥିଲା । ମହମ୍ମଦ ବାଜୀ ଏଥିରେ ଦୁଃଖୀ ହୋଇ ପଡ଼ିଥିଲେ ।

ମହମ୍ମଦ ବାଜୀ ଥିଲେ କର୍ମଯୋଗୀ । କର୍ମକୁ ସେ ଭଗବାନ ବୋଲି ମାନୁଥିଲେ । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଧର୍ମ ମଧ୍ୟରେ ସେ ଅଟକି ନଥିଲେ । କୋରାନ୍, ବାଇବେଲ, ଗୀତା ସବୁକୁ ଆଦର କରୁଥିଲେ । କିନ୍ତୁ କର୍ମ ହିଁ ଥିଲା ତାଙ୍କର ଧନ । ଦେଶପାଇଁ ଯେତେବେଳେ ଯେଉଁ ଆହ୍ୱାନ ଆସୁଥିଲା ସେ ସେଥିରେ ଡେଇଁ ପଡୁଥିଲେ ।

୧୯୭୫ ମସିହା ସ୍ୱାଧୀନ ଭାରତର ଏକ ସଙ୍କଟ କାଳ ଥିଲା । ତତ୍କାଳୀନ ସରକାର ଦେଶରେ ଜରୁରୀ କାଳୀନ ପରିସ୍ଥିତି ଜାରି କରିଥିଲେ । ଯେ କେହି ସରକାରଙ୍କ ବିରୁଦ୍ଧରେ କିଛି କହିଲା କିମ୍ୱା ଲେଖିଲା ତାକୁ ଗିରଫ କଲେ । ଏହି ସମୟରେ ମଧ୍ୟ ମହମ୍ମଦ ବାଜୀ ଚୁପଚାପ୍ ବସି ନଥିଲେ । ରମାଦେବୀ, ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ ପ୍ରମୁଖଙ୍କ ପ୍ରଚାରପତ୍ର ଅତି ଗୋପନରେ ମହମ୍ମଦ ବାଜୀ ଗାଁ ଗହଳରେ ବାଣ୍ଟୁଥିଲେ । ଏ ଅଂଚଳରେ ଆନ୍ଦୋଳନ କରିବା ପାଇଁ ମସୁଧା ଚାଲିଥିଲା । କୌଣସି ସୁତ୍ରରୁ ପୁଲିସ ଖବର ପାଇ ତାଙ୍କୁ ନଜରବନ୍ଦୀରେ ରଖିଥିଲା । ତାଙ୍କୁ ହୋମ୍ ଆରେଷ୍ଟ କରାଯାଇଥିଲା । ତାଙ୍କ ଘରେ ପୁଲିସ୍ ପହରା ଦେଉଥିଲା ଓ ଯୁଆଡ଼େ ଗଲେ ତାଙ୍କ ପଛେ ପଛେ ପୁଲିସ୍ ରହୁଥିଲେ ।

ବିନୋବା ଭାବେ ଭାରତରେ ଗୋହତ୍ୟା ନିରୋଧ ଆଇନ ପ୍ରଣୟନ କରିବାପାଇଁ ଆନ୍ଦୋଳନ କରିଥିଲେ । ଏଥିପାଇଁ ସେ ଏକବର୍ଷ କାଳ ମୌନବ୍ରତ ପାଳନ କରିଥିଲେ । ସାରା ଭାରତରେ ଏହି ଆନ୍ଦୋଳନ ତେଜିଲା । ସର୍ବୋଦୟ କର୍ମୀମାନେ ଏଥିରେ ମୁଖ୍ୟ ଭୂମିକା ନେଇଥିଲେ । ମହମ୍ମଦ ବାଜୀ ଭାରତର ବିଭିନ୍ନ ଅଂଚଳ ବୁଲି ଅନଶନ, ଧର୍ମଘଟ, ଶୋଭାଯାତ୍ରାରେ ସାମିଲ ହୋଇଥିଲେ । ଗୋହତ୍ୟା ନିରୋଧ ଆଇନପାଇଁ ଉଲ୍ଲେଖ ଯୋଗ୍ୟ କାମ କରିଥିବାରୁ ତାଙ୍କୁ ପୌନାର ଆଶ୍ରମ ସମ୍ବର୍ଦ୍ଧନା କରିଥିଲେ ।

ମହମ୍ମଦ ବାଜୀ ପ୍ରତ୍ୟେକ ଧର୍ମକୁ ସମ୍ମାନ ଦେଉଥିଲେ । ୧୯୯୧ ମସିହାରେ ଅଯୋଧ୍ୟାରେ ରାମ ଜନ୍ମଭୂମି, ବାବ୍ରି ମସ୍‌ଜିଦ୍ ପାଇଁ ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି ହୋଇଥିଲା । ସାଂପ୍ରଦାୟିକ ସଦ୍‌ଭାବ ପାଇଁ ସେଠାରେ ସେ ମହାତ୍ମାଗାନ୍ଧିଙ୍କ ପ୍ରତିମୂର୍ତ୍ତି ତଳେ ଅନ୍ୟ ସର୍ବୋଦୟ କର୍ମୀଙ୍କ ସହ ଅନଶନରେ ବସିଥିଲେ ।

ବିଦ୍ରୋହୀମାନଙ୍କ ଠେଙ୍ଗା ମାଡ଼ରେ ରକ୍ତାକ୍ତ ହୋଇ ସେ ଡାକ୍ତରଖାନାରେ ଚିକିତ୍ସିତ ହୋଇଥିଲେ । କିନ୍ତୁ ଏଥିପ୍ରତି ସେ ଆଦୌ ବିଚଳିତ ହୋଇନଥିଲେ । ରାମଚନ୍ଦ୍ରଙ୍କର ଏହା ତାଙ୍କ ପାଇଁ ଆଶୀର୍ବାଦ ବୋଲି ଉଚ୍ଚାରଣ କରିଥିଲେ । ଡା. ସୁଶୀଳା ନାୟାରଙ୍କ ସେବା ଶୁଶ୍ରୁଷାରେ ସେ ଆରୋଗ୍ୟ ଲାଭ କରିଥିଲେ ।

କର୍ମମୟ ଜୀବନରେ ଏମିତି ବହୁ ଘାତ ପ୍ରତିଘାତର ସମ୍ମୁଖୀନ ହୋଇଛନ୍ତି ମହମ୍ମଦ ବାଜୀ । କିନ୍ତୁ ଜୀବନ ଯୁଦ୍ଧରେ ସେ କେବେ ପଛଘୁଂଚା ଦେଇ ନାହାନ୍ତି । ବରଂ ଏଥିରୁ ସେ ଯେଉଁ ଅଭିଜ୍ଞତା ହାସଲ କରି ଆଗାମୀ କାର୍ଯ୍ୟକ୍ରମ ପାଇଁ ସମ୍ବଳ ପାଇଛନ୍ତି ।

ସଂପ୍ରତି ବୟସଭାରରେ ସେ ନଇଁ ପଡ଼ିଥିଲେ ବି ତାଙ୍କ ଜୀବନ ସମର୍ପିତ ସେବାର କାହାଣୀ କହିଥାଏ । ପୀଡ଼ିତ ମଣିଷର ଉତ୍‌ଥାନରେ ମହମ୍ମଦ ବାଜୀଙ୍କ ସାରା ଜୀବନ କଟିଗଲା, ସେ ଜଣେ ସନ୍ଥ ମଣିଷ, ତାଙ୍କ ଜୀବନ ଦର୍ଶନ ହେଉଛି –

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ ।
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।" (ସନ୍ଥ କବି ଭୀମ ଭୋଇ)

ତାଙ୍କ ଜୀବନ ଏକ ମହାନ ଆଦର୍ଶର କାହାଣୀ । ତାଙ୍କ ବହୁ ବର୍ଣ୍ଣନୀୟ ଜୀବନ ଏ ଦେଶର ଅଗଣିତ ଯୁବପୀଢ଼ି ପାଇଁ , ମଣିଷ ସମାଜ ପାଇଁ ପ୍ରେରଣାର ଉତ୍ସ ହେଉ, ଏହି ଆଶା ରହିଛି ।

—୦୦୦—



ଜନ୍ମ – ୧୭/୦୧/୧୯୬୦
ପିତା – ବାଉରୀ ବନ୍ଧୁ ମହାନ୍ତି
ମାତା – ଶୈଳବାଳା ମହାନ୍ତି
ଜନ୍ମସ୍ଥାନ - ଅନ୍ଦୁକି , କେନ୍ଦ୍ରାପଡ଼ା

ସାଂପ୍ରତିକ ସମୟରେ ଅଧ୍ୟାପିକା ଡ. ବାସନ୍ତୀ ମହାନ୍ତିଙ୍କର ଲେଖାଗୁଡ଼ିକ ବିଶେଷଭାବେ ତୃଣମୂଳସ୍ତରର ଜନସାଧାରଣଙ୍କ ସମସ୍ୟାକୁ କେନ୍ଦ୍ରକରି ଗଢ଼ି ଉଠିଛି । ସେଥିପାଇଁ ଏହା ଖୁବ୍ ଲୋକପ୍ରିୟ । ଡ. ମହାନ୍ତି ସାକ୍ଷରତା କାର୍ଯ୍ୟରେ ନିଜ ପାରଦର୍ଶିତାର ମଧ୍ୟ ଉପଯୋଗ କରିଅଛନ୍ତି । ସଂଯୋଗୀ ପ୍ରାଥମିକ ପୁସ୍ତକ 'ଆଗକୁ ପାଦେ'ର ସେ ହେଉଛନ୍ତି ଲେଖିକା । ଏହା ବ୍ୟତୀତ ନବସାକ୍ଷରଙ୍କ ପାଇଁ ତାଙ୍କର ଅନ୍ୟ ଏକ ପୁସ୍ତକ ଭୂମିପୁତ୍ର ବଗା ପୂଜାରୀ ପୂର୍ବରୁ ପ୍ରକାଶିତ । ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀଙ୍କ ସଂପର୍କରେ ଏହି ନବସାକ୍ଷର ପୁସ୍ତକଟି ଲୋକପ୍ରିୟ ହେବାର ଆଶା ରଖାଯାଏ । ଏହା ବ୍ୟତୀତ ଡ. ମହାନ୍ତିଙ୍କର 'ନାରୀ ନୀତି', ପ୍ରଗତି ଓ ପରଂପରା' (ପ୍ରବନ୍ଧ ଓ ସ୍ତମ୍ଭ ସଂକଳନ) 'ନୀଳଶୈଳର ପଦଚାରୀ' (ସାହିତ୍ୟ ଆଲୋଚନା), ଗାନ୍ଧୀଙ୍କୁ ଫେରାଇ ଆଣିବା (ଅନୁବାଦ) ତାଙ୍କ ଲେଖକୀୟ ପ୍ରତିଭାର ପରିଚୟ ଦିଏ ।

**ରାଜ୍ୟ ଜନଶିକ୍ଷା ଓ ନିରନ୍ତର ଶିକ୍ଷା ସାଧନ କେନ୍ଦ୍ର (ଅଗ୍ରଗାମୀ),ରାୟଗଡ଼**
**ପୁରୁଣା ଏଲ୍.ଆଇ.ସି. କଲୋନୀ, ଦ୍ୱିତୀୟ ଗଳି, ରାୟଗଡ଼-୭୬୫୦୦୧**